ବୃହତ୍

# ବଗ-ବଗୁଲୀ କାହାଣୀ

( ପ୍ରଥମ ଭାଗ )

ଲେଖକ—ଶ୍ରୀ ବୀରକିଶୋର ରାୟ

ପ୍ରକାଶକ—ଧର୍ମଗ୍ରନ୍ଥ ଷ୍ଟୋର

ନୂତନ ମୁଦ୍ରଣ-୧୯୮୭

ପ୍ରାପ୍ତିସ୍ଥାନ—ଧର୍ମଗ୍ରନ୍ଥ ଷ୍ଟୋର
ପରିଚାଳକ—ଶ୍ରୀ ବିଦ୍ୟାଧର ସାହୁ
ଅଲିଶାବଜାର, କଟକ-୨
ଫୋନ୍ ନଂ-୨୪୭୯୬

ମୂଲ୍ୟ—ପନ୍ଦର ଟଙ୍କା ମାତ୍ର

# ସୂଚିପତ୍ର





# ମୁଖବନ୍ଧ

"ସାଂସାରିକ ଦୁର୍ବିସହ ଚିନ୍ତାଧାରା ମଧ୍ୟରେ ମନୁଷ୍ୟଙ୍କ ଜୀବନ ଯେତେବେଳେ ରୁଷ୍ଟ ହୋଇଉଠେ, ସେତେବେଳେ ସ୍ଥୁର୍ତ୍ତି କ'ଣ ? ............ଟିକିଏ ଶାନ୍ତି ।"

ସେହି ଶାନ୍ତି ଟିକକର୍ଷି ଚିନ୍ତବୃତ୍ତିର ପରିବର୍ତ୍ତନ ପାଇଁ ଏକାନ୍ତ ପ୍ରୟୋଜନ । ଶାନ୍ତି ନ ଆସିଲେ ସୁଖ ଆସେ ନାହିଁ । ସୁଖ ନ ଆସିଲେ ମନୁଷ୍ୟର ଜୀବନୀଶକ୍ତି ଦୁର୍ବଳ ହୋଇ ଉଠେ । ଏଣୁ ଲକ୍ଷପତି, କୋଟିପତିମାନଙ୍କ ଗ୍ରାମ୍ଭାବରେ ମୂଣ୍ଡ ଟେକ ଠିଆହୁଏ 'ଅବସର ବିନୋଦନ ।'

ଦରିଦ୍ର କୁଟୀରରେ ଅବସର ବିନୋଦର ଚରସାବା ଉଷ୍ଣ ବୁହାଇବା ଏକ ଅବଲମ୍ବନ ମାତ୍ର । ତେଣୁ ପୂର୍ବୋକ୍ତ ମନୀଷୀବୃନ୍ଦ ସେମାନଙ୍କ ଅଭିଜ୍ଞ ଅନୁଭୂତି ଦ୍ୱାରା ମନୁଷ୍ୟର ଚିନ୍ତାଧାରାର ପରିବର୍ତ୍ତନ ଆଣିବାପାଇଁ ଲୋମହର୍ଷଣକାରୀ କାହାଣୀକୁ ଗୋଟିଏ ପ୍ରକାର ଟନ୍ଲା ବୋଲି ସ୍ଥିର କରିଥିଲେ । ଦେଶରେ ଯୁଗ ଯୁଗ ଧରି କାହାଣୀର ଦାମ୍ ବଢ଼ୁଛି ବେଶୀ । ପୁରାଣ କହ, ଉପନ୍ୟାସ କହ ସବୁ ଗୋଟି ଗୋଟିଏ କାହାଣୀ ଛଡ଼ା ଅନ୍ୟ କିଛି ନୁହେଁ । ଏପରିକି ଅଖିଳ ଜଗତଟାହିଁ କାହାଣୀମୟ ।

କାହାଣୀରେ ଧର୍ମ ଶିକ୍ଷା, ନୀତି ଶିକ୍ଷା, ସାହସୀ ହେବାପାଇଁ ସୂଚନା, ଲୋମହର୍ଷଣକାରୀ ଅସମ୍ଭବ କାର୍ଯ୍ୟ, ସମସ୍ତ ପ୍ରକାର ହାବଭାବ ଓ ଭଲପାଇବାର ସାରକଥା, ମନର ଅନେକ ବଳକୁ ଚରିତାର୍ଥ କରିବାପାଇଁ ନିଯୁକ୍ତ କାହାର ସାହାଯ୍ୟ କରେ ସବୁ ପ୍ରକାର ବିଷୟ କୁଞ୍ଜିଭୂତ ହୋଇ ଥିବାରୁ ପାଠକର ରୁଷ୍ଟ ମନକୁ ପରିବର୍ତ୍ତନ କରିବାପାଇଁ ତାହା ଗୋଟିଏ ଅବଲମ୍ବନ । ଏଣୁ ମୁଁ

ବଗ-ବଗୁଲୀ କାହାଣୀର ଅବତାରଣା ଜନ୍ୟ । ଏଥିପାଇଁ ଅବଶ୍ୟ ଧର୍ମଗ୍ରନ୍ଥ ଷ୍ଟୋରର ପ୍ରୋପ୍ରାଇଟର ଶ୍ରୀଯୁକ୍ତ ବିଦ୍ୟାଧର ସାହୁ ମୋତେ ଉତ୍ସାହିତ କରିଛନ୍ତି । ସେ ଜଣେ ସତ୍ୟବାଦୀ, ଧର୍ମନିଷ୍ଠ ଓ ମହତ୍ ବ୍ୟକ୍ତି । ଉଦ୍ୟମ ଏବଂ ଧୈର୍ଯ୍ୟର ଅଭାବ ତାଙ୍କଠାରେ ପରି-ଲକ୍ଷିତ ହୁଏ ନାହିଁ । ସ୍ୱତନ୍ତ୍ର ଉତ୍ଥାନ ପତନରେ ଭରା ତାଙ୍କ କର୍ମମୟ ଜୀବନର କଠୋର କାହାଣୀ ଶୁଣିଲେ ଜଣେ ଯୁବକ ଆପେ ଆପେ ନିଜକୁ ହଜାଇ ବସିବ । ଯାହାହେଉ ମୋଟ ଉପରେ କହିବାକୁ ଗଲେ—ବିଦ୍ୟାଧର ବାବୁ ଜଣେ କର୍ମନିଷ୍ଠ ଓ ମହତ୍ ବ୍ୟକ୍ତି । ତେଣୁ ତାଙ୍କର ଅନୁରୋଧରେ ଲେଖିଥିବା ବଗ-ବଗୁଲି କାହାଣୀ ଖଣ୍ଡିକ ତାଙ୍କର ହାତରେ ଦେଇ ପ୍ରକାଶ କରିବା ପାଇଁ ଅନୁରୋଧ ଜଣାଇଲି ।

କାହାଣୀ ଖଣ୍ଡିକ ସତରୋଟି ଗଳ୍ପରେ ସୀମିତ ହୋଇଛି । ଦୁଇଟି ବଗର ଏବଂ ଦୁଇଟି ବଗୁଲିର । ଗୋଟିଏ କୁମାର ପରେ ଗୋଟିଏ ଲେଖାଏଁ କୁମାରୀର କାହାଣୀ ଧାରାବାହିକ ସୂତ୍ରେ ଲିପିବଦ୍ଧ ହୋଇଛି । ସରସ ଗଳ୍ପଗୁଚ୍ଛରେ ଭରା । ସ୍ଥାନେ ସ୍ଥାନେ ଲୋମ-ହର୍ଷଣକାରୀ ଯେପରି ହୋଇଛି, ସ୍ଥାନେ ସ୍ଥାନେ କରୁଣ ବା ସେହିପରି ହୋଇଛି । ନାନାପ୍ରକାର ନୀତିଶିକ୍ଷା ସନ୍ନିବେଶିତ ହେବାରୁ ପାଠକବର୍ଗ ତଥା ଗୁରୁଜନମାନଙ୍କ ପକ୍ଷେ ଏହା ଆଦରର ଧନ ହୋଇ ଉଠିବ । ଏଣୁ ଅନୁରୋଧ, ପୁସ୍ତକର ବିଷୟ ପ୍ରତି ଧ୍ୟାନ ଦେଇ ପାଠକ ପାଠିକା ସନ୍ତୋଷଲାଭ କଲେ ଶ୍ରମ ସାର୍ଥକ ମନେ କରିବି । ଇତି ।

ମୁ: ଅଠଗଡ଼
ତା ୨୭ । ୫ । ୭୧

ବିନୀତ
ଲେଖକ—ଶ୍ରୀ ବୀରକିଶୋର ରାୟ

### ବୃହତ୍

# ବଗ ବଗୁଲି କାହାଣୀ

## ପ୍ରଥମ ଭାଗ

ଆଷାଢ଼-ଶ୍ରାବଣ ଦି'ମାସ ଯାକର ଘୋର ବର୍ଷା, ଅନ୍ଧାର ରାତି । କାଲୁଆ ପବନରେ ପୃଥିବୀ ସଡ଼ି ପଚି ଗୁଡ଼ାଏ ହଇରାଣ ହେଲା ପରେ ପହଞ୍ଚିଲା ଭାଦ୍ରବ ମାସ । ପ୍ରଚଣ୍ଡ ଖରା । ଜମାଟ ବନ୍ଧା ବାଦଲଗୁଡ଼ାକ ତରଳି ହୋଇ ଆସିଲା । ମଶାଗୁଡ଼ାକ ମାତି ଉଠିଲେ କ'ଣ ହେବ; ରାତିକି ପବନ ଥାଏ । ଦିନ ପନ୍ଦରଟାରେ ରାସ୍ତା ଘାଟ ସବୁ ଏକ ପ୍ରକାର ବାଗକୁ ଆସି ଯାଇଛି । ଚଷା ପୁଅ ଭୋଦେଇ ବର୍ଣ୍ଡିରେ ବ୍ୟସ୍ତ । ଗାଆଁର ଛୋଟ ଛୋଟ ଝିଅଗୁଡ଼ାକ ଜହ୍ନିଫୁଲ ତୋ, ଠା, କର ସଞ୍ଜବେଳକୁ ଗାଁ । ଦାଣ୍ଡ କମ୍ପାଇ ଦେଉଥାନ୍ତି ।

ଆସିଲା ଆଲୁଅ ପକ୍ଷ । ଜହ୍ନ ରାତି । ଦୁନିଆଟା ହସିଲା ଭଳି ଜଣା ପଡ଼ିଲା । ଚହଲିଆ ଆମ୍ବ ତୋଟାଟିଏ । ନଈ କୂଳରୁ ଅଳ୍ପ ଘୁଡ଼ିକରି ଗୋଟିଏ ଗଛ ଡାଳରେ ବଗ-ବଗୁଲି ବସା ବାନ୍ଧି କେଉଁ ଅନନ୍ତକାଳରୁ ବସି ଅଛନ୍ତି । ସେଦିନ ଚକ୍‌ଚକିଆ ଜହ୍ନ ଆଲୁଅ ଦେଖି

ବଗ କହିଲା—ବଗୁଲି ଲୋ ପୃଥିବୀ କ୍ଷଣାକ୍ଷଣକେ ଆନ ।

ବଗୁଲି କହିଲା—ବଗରେ, ତୋର ତେଣିକି କାହିଁକି ଧ୍ୟାନ ?

ବଗ କହିଲା—ତୁ ମିଛ ବୁଝୁଚୁ କି ବଗୁଲି । ଏ ଦୁନିଆର ରାତି ଦେଖୁଚୁଟି, ଦିନଥିଲା ଯେ ଖାଲି ଅନ୍ଧାର, ମେଘ ବରଷା, ରାତି ରାତି ଆମେ ଦି'ଟା ଜୀବ ବସାରେ କୁଙ୍କୁରି କାଙ୍କୁରି ହୋଇ ବସି କେତେ ଦୁର୍କଟରେ କଟାଉଥିଲେ । ଟିକିଏ ଆଲୁଅ ଭଳି ମିଳୁଥିବ ?

ବଗୁଲି କହିଲା – ଜହ୍ନ ଘର ଆସି ନଥିଲା ।

ବଗ କହିଲା—ଆରେ ଜହ୍ନ ପନ୍ଦର ଦିନରୁ ପନ୍ଦର ଦିନ ଆସିବାର କଥା । ବର୍ଷା ଋତୁ ମାସ ଯାକ ମେଘ ଭିତରେ ଲୁଚିଥିଲା ସେ । ଶୁଖିଲା ପାଚିଲା ଭାଦ୍ରବ ମାସ ଆସିଲାରୁ ବଗୁଲିଆ ମେଘଗୁଡ଼ାକୁ ଦେଇ ପୁଣି ଦେଖା ଦେଉଛି । ଆଃ କେଡ଼େ ବଢ଼ିଆ ତା'ର ଚେହେରା ।

ବଗୁଲି କହିଲା—ସେ ଚେହେରାରୁ ଆମକୁ କ'ଣ ମିଳିବ । ବଢ଼ିଆ ଜହ୍ନ ପଡ଼ୁଛି । ମନ ଶିହରି ଉଠୁଛି । ନଈଟା କୁଳୁ କୁଳୁ ଶବ୍ଦ କରି ଛୁଟି ଚାଲିଛି କୋଉ ଦୂର ଦୂରାନ୍ତକୁ । ଏତେବେଳେ ତୁ ଗୋଟିଏ ଗପ କହ ଯେ, ଶୁଣି ରାତି ପାହି ଯାଉ ।

ବଗ କହିଲା—ମୋ କଥାରେ ଯେବେ ରାତି ନ ପାହେ ?

ବଗୁଲି କହିଲା—ମୁଁ ଗୋଟିଏ କହିବି ।

ବଗ କହିଲା—ହଉ ତେବେ ଶୁଣ ।

ବଗୁଲି ଲୋ ବଗୁଲି ପବନ ବହେ ସୁଁ ।
କଥା ପଦକେ ମାରୁଥିବୁ ଗୋଟିଏ ଲେଖା ହୁଁ ।

ରାଜା ରାଜୁଡ଼ା କଥା ପୁଣି କୁହୁକ ଦେଶ ପଦ
କାଳ ନାଗୁଣୀ ଗରଜନକୁ କେଳ ବୁଡାର ପଦ ।
ଅସୁର ଯାକ ଶଶୁର ଘରେ ମସୁର ଭଜା ଖାଇ
ଭୂତଙ୍କ ସଙ୍ଗେ ନୃତ୍ୟ କରନ୍ତି ପ୍ରେମରେ ହୋଇ ବାଇ ।
ମୋଟା ବୁଢିଆ ଗୋଟା ବୁଡ଼ାଟା ଘୋଡ଼ା ପିଠିରେ ବସି
ହାବୁକା ଖାଇ ଯାବୁକା ମନେ ଗୁବୁକ ଦେଲା ଭସି ।
ଉଡ଼ିଲା ଘୋଡ଼ା ପଡ଼ିଲା ଖସି ବୁଡ଼ିଲା ସିନ୍ଧୁ ଜଳେ
ଫାଳିଆ ପାଟି କାଢ଼ି କାଳିଆ ଗିଳିଲା ତାକୁ ବଳେ ।
ଲୁଚିଲା ନହିଁ କଥାଟା ଦିନେ ବାହିଲା ଲୋକ ମୁଖେ
ଧମକୁମାର କଥା ଶୁଣି ତୁ ହୁଁ ମାରୁଥା ସୁଖେ ।

ବଗୁଲି କହିଲା, ମୁଁ ଏଥର ତୁମ୍ଭ ମାଛବାରେ ଲଗିଲି, ତୁ ଆଉ ହେଲା କରନା ଚଞ୍ଚଳ ଚଞ୍ଚଳ କହ ।

ବଗ ଆରମ୍ଭ କଲା—

## ଧର୍ମ କୁମାର କାହାଣୀ

ଓଡ଼ିଶା ପ୍ରଦେଶରେ ଆଜ କାଲି ପରି ନାହିଁ, ପୂର୍ବ କାଳରେ ଛତିଶଟା ରଜା ଗଡ଼ ଥିଲା । ସବୁ ଗଡ଼ରେ ଜଣେ ଲେଖାଏଁ ସାମନ୍ତ ରଜା ରହୁଥିଲେ । ସମ୍ରାଟ ଥିଲେ ଓଡ଼ିଶା ରଜା । ସେ କାଳରେ ତାଙ୍କୁ ମହାରଜା କୁହାଯାଉଥିଲା । ଛତିଶ ଗଡ଼ରେ ଯେଉଁ ଓଡ଼ିଶା ରଜାମାନେ ରଜପଣ କରୁଥିଲେ, ସେମାନେ ଖାଲି ପଣରେ କେହି କାହାକୁ ଊଣା ନୁହନ୍ତି । ଧନ ରତ୍ନ ତ ଅମାପ ରଖିଥାନ୍ତି, ପରବାଏ କଣ । କିଛି ବିପଦ ପଡ଼ିଲେ କି ନିଜ ନିଜ ଭିତରେ କଳି ଝଗଡ଼ା ହେଲେ ମହାରଜ ସାହାଯ୍ୟ କରିବାକୁ ପ୍ରସ୍ତୁତ ଥାଆନ୍ତି । କଳି ଗୋଳ ଗୁଡ଼ାକ ଆପୋଷ ମତେ ନିଷ୍ପତ୍ତି କରି ଦିଆଯାଏ । ତେଣୁ ଏ ପ୍ରଦେଶରେ ସୁଖ ଶାନ୍ତିର ଅଭାବ ନଥିଲା । ଓଡ଼ିଆଙ୍କ ନାଁ ସବୁଠୁ ଟେକ ହୋଇଥିଲା । ବୋଇତ ବାଣିଜ୍ୟ କରି ଓଡ଼ିଆ ପୁଅ ବହୁ ଦୂର ଦେଶର ସନ୍ଧାନ ଆଣିବା ସଙ୍ଗେ ସଙ୍ଗେ ଅପୂର୍ବ ପଦାର୍ଥମାନ ବି ଆଣୁଥିଲେ ।

ଏ ଜାତିକୁ ସମସ୍ତେ ଖାତିର କରୁଥିଲେ । ବିଶେଷତଃ ଜଗନ୍ନାଥ ଦେଶ ବୋଲି ହିନ୍ଦୁମାନେ ଏ ଦେଶର ଲୋକଙ୍କୁ ମହାମାନ୍ୟ କରୁଥିଲେ ।

ଏ ଯୁଗ ନୁହେଁ । ସୁଦ୍ଧ ପୁରଣ ଯୁଗ । ସେତେବେଳେ ସବୁଆଡ଼େ ଜଙ୍ଗଲ ପାହାଡ଼ ପୂରି ରହିଥାଏ । ବିଜାସପୁର ରଜା ଓ ସମ୍ବଲପୁର ରଜାଙ୍କ ଭିତରେ ଗୋଟାଏ ଯୁଦ୍ଧ ଆରମ୍ଭ ହୋଇଗଲା । ଯନ୍ତ୍ର ମନ୍ତ୍ରର ଯୁଗ । ଅସୁର ଅସୁରୁଣୀଙ୍କ ମାୟା । ଋଷି

ସନ୍ନ୍ୟାସୀଙ୍କ ମହିମା ଦେଶରେ ଭରପୂର ହୋଇଥାଏ । ବିଜ୍ଞାନ କଣ, ସେ କଥା କେହି ଜାଣି ନଥାନ୍ତି । କଥାରେ ଅଛି—

"ବାପ ପଠାଣ, ପୁଅ ପଠାଣ
ଯିଏ ମାରିଲା ସେ ହେଲା ଠାଣ ।"

ଏହି ନ୍ୟାୟରେ ଦେଶ ଚଳୁଥାଏ । ଯୋର ଯାହାର ମୂଲକ ତା'ର । କିଏ କାହା କଥା ମାନୁ ଛି । ଦେଖୁ ଦେଖୁ ଦୁହିଁଙ୍କ ଯୁଦ୍ଧ ଦିନକୁ ଦିନ ଘମାଘୋଟ ହେବାକୁ ଲାଗିଲା । ଗୋଟାଏ କିଛି ମୀମାଂସା କରି ନେବାପାଇଁ ଝଗେ ଓଡ଼ିଶା ମହାରାଜା ବହୁତ ଚେଷ୍ଟା କଲେ । ଫଳ କିଛି ହେଲାନି । ବେଳକୁ ବେଳ ଦୁ'ପକ୍ଷର ଧନ, ମାନ ଓ ସୈନ୍ୟ କହୁ ପରିମାଣରେ କ୍ଷୟ ହେଲା ।

ସମ୍ବଲପୁର ରାଜା ଭାରି କୌଶଳୀ । ଦିନକୁ ଦିନ କୌଶଳରେ ସେ ବଳାସପୁର ରାଜାଙ୍କୁ କାବୁ କରି ପକାଇଲେ । ଯେମିତି ଜଣାଗଲା—ସମ୍ବଲପୁର ଜିଣିବ ।

ବେଶ, ଦୁନିଆ ସବୁଆଡ଼େ ଚିତ୍କାର ଶୁଣାଗଲା—ବଳାସପୁର ନିଶ୍ଚେ ହାରିବ । କଥା'ଟା ବଳାସପୁର ରାଜାଙ୍କୁ ଭାରି ଆଘାତ କଲା । ତେଣୁ ସେ ହଠାତ୍ ଯୁଦ୍ଧ ବନ୍ଦ କରି ସନ୍ଧିପତ୍ର ପଠାଇଲେ ।

ସମ୍ବଲପୁର ରାଜା ଯେତେବେଳେ ଯାହା କରନ୍ତି ଭଲ ହେଉ ବା ମନ୍ଦ ହେଉ, ଥରେ ଓଡ଼ିଶା ମହାରାଜାଙ୍କୁ ପଚାରନ୍ତି । ଏ ସନ୍ଧି କଥା'ଟା ବି ପଚାରି ପଠାଇଲେ ।

ମହାରାଜା କହି ପଠାଇଲେ—ଭାଇ ଭାଇ ଭିତରେ କଳି । ଯେତେଦିନ ଯାଏ ପ୍ରଭୁଙ୍କର କୃପା ଥିଲା, ସେତେଦିନ ତୁମେ ଯୁଦ୍ଧରେ ମାତି ଅଯଥା ଲୋକ କ୍ଷୟ କଲ । ଭଣ୍ଡାର ଘର ବି ଖାଲି ହୋଇଗଲା । ଏଣିକି ଯେବେ ମନ ସରଳ ହୋଇ ଯାଇଛି, ତେବେ

ତୁରନ୍ତ ସନ୍ଧି କରି ପକାଅ । ମୋର କିଛି ଆପତ୍ତି ନାହିଁ । ବରଂ ଦୁଇ ପକ୍ଷକୁ ଅଭିନନ୍ଦନ ଜଣାଉଛି ।

ସନ୍ଧି ହେଲା ସମ୍ବଲେଶ୍ୱରୀଙ୍କ ମନ୍ଦିରରେ । ଦୁ' ପକ୍ଷରୁ ପ୍ରଚୁର ଭୋଗରାଗର ଆୟୋଜନ ହୋଇଥାଏ । ଯୁଦ୍ଧଶାନ୍ତ ସୈନିକ ଓ ପ୍ରଜା ପାଠକ ହଜାର ହଜାର ଆସିଥାନ୍ତି । ନାଟ ତାମସା ର ସୁଅ ଛୁଟିଲା । ନାଟ ଦେଖିଲେ । ଖିଆ ପିଆ କରି ହରିବୋଲ ଦେଲେ ।

ସନ୍ଧିପତ୍ର ଦସ୍ତଖତ ହେଲା । କେହି କାହାର ରାଜ୍ୟ ଆକ୍ରମଣ କରିବେ ନାହିଁ, ଆଜିଠାରୁ ବନ୍ଧୁ ଭାବରେ ଚଳିବେ । ବିଶେଷ କଥା—ସମ୍ବଲପୁର ରାଜାଙ୍କ ଧର୍ମକୁମାର ଏବଂ ବଳାସପୁର ରଜାଙ୍କ ଝିଅ ମାରକୁମାରୀଙ୍କର ବାହାଘର ହେବ ।

ଏକଥାରେ ଦୁଇ ପକ୍ଷ ପ୍ରଜାପାଠକରେ ଭାରି ସୁଖୀ ହେଲେ ଜେ ଜେକାର ଉଠାଇଲେ । ମହାପ୍ରସାଦ ନିର୍ବନ୍ଧ ହୋଇଗଲା । ଆସନ୍ତା ମାଘମାସ ଦଶମୀ ଦିନ ବାହାଘର ହେବାର କଥା ।

ଯୁଦ୍ଧ ନଆଁ ଲିଭାଇ ଦେଇ ଦୁଇପକ୍ଷଯାକ ଖୁସିରେ ଘରକୁ ଗଲେ ।

କଥାରେ ଅଛି—ନରମାୟା ନାରାୟଣଙ୍କୁ ଅଗୋଚର । ଏହି ମଣିଷ ମନରେ ଅମୃତ ଅଛି । ଏହି ମଣିଷ ମନରେ ବିଷ ବି ଅଛି । କାହା ମନକଥା କିଏ ବୁଝୁଛି ? ବାହାଘର ହେବ । ସୁଅ ବୋହୁ ଘରେ ପଶିବେ । ଘର ପୂରିଉଠିବ । ଏସବୁ ମଙ୍ଗଳ କଥା ଭାବି ସମ୍ବଲପୁର ରାଜା ରାଣୀଙ୍କ ନିଦ ନାହିଁ । ମନ ଖାଲି ଆନନ୍ଦରେ ମାତି ଉଠୁଛି । ବାହାଘର ପାଖେଇ ଆସିଲାଣି । କଣ କେମିତି ଯୋଗାଡ଼ ହେବ, ଏଥିପାଇଁ ରାଜ୍ୟସାରା ଚଳବଚଳ ଲାଗିଲାଣି । ତେଣେ ବଳାସପୁର ରଜା ନିଜ ବୁଦ୍ଧିର ତାରଫ କରିବାରେ ଲାଗିଛନ୍ତି । ବାହାଘର ବାହାନାରେ ସେ କେମିତି ସମ୍ବଲପୁର

ରାଜାଙ୍କର ସର୍ବନାଶ କରିବେ, ଏଥିପାଇଁ ଯୋଗାଡ଼ କରିବାରେ ବ୍ୟସ୍ତ । ତାଙ୍କ ଶ୍ୱଶୁର ଘର ହେଉଛନ୍ତି କଳିଙ୍ଗର ଗଡ । ନିଜ ଝିଅ ମୀରକୁମାରୀକୁ ନେଇ ସେଠାରେ ଛାଡ଼ିଲେ । କଥା ହେଲା— ଯୋଧପୁର ରଜା ପୁଅ ସଙ୍ଗେ ତା'ର ବାହାଘର ହେବ । କଥାଟା ଓଡ଼ିଶାକୁ ଯେପରି ନ ଆସେ ।

ବେଶ୍ୟାଟିଏ ଥାଏ । ତା ନାଁ ରମ୍ଭା ବାଈ । ତା ଘରେ ଥାନ୍ତି ପାଞ୍ଚୋଟି ଝିଅ । ସମସ୍ତେ ଡାକୁବଳ ଡାକୁବଳ ସୁନ୍ଦରୀ । ଡାକୁବଳ ଡାକୁବଳ ଚତୁରୀ । ଯାଦୁ ବିଦ୍ୟାରେ ଧୁରନ୍ଧର । ମନ କଲେ ଏପାରି ଗଛ ସେ ପାରିରେ ଓ ସେପାରି ଗଛ ଏପାରିରେ ରଖିବେ । ମଣିଷକୁ ମେଣ୍ଢା, ମେଣ୍ଢାକୁ ମଣିଷ ବନାଇ ଦେବେ । ସେମାନଙ୍କ ପାଖରେ ଅସାଧ ହୋଇ ଗୋଟିଏ କଣ୍ଟୁ ନଥାଏ ।

ବଳାସପୁର ରଜାଙ୍କ ନଜର ପଡ଼ିଲା ସେଇଠି । ରମ୍ଭା ବାଈକ ଡକାଇ ନଗଦ ଲକ୍ଷେ ଟଙ୍କା ଗଣି ଦେଲେ । କହିଲେ— ଦେଖ୍ ରମ୍ଭା ଆହୁରି ଲକ୍ଷେ ଟଙ୍କା ଦେବ । ଗୋଟିଏ ଏଭଳି ଝିଅ ମୋତେ ଦେବୁ, ଯେ କି ମୋ ଶତ୍ରୁଠାରୁ ପ୍ରତିଶୋଧ ଆଦାୟ କରି ପାରିବ ।

ରମ୍ଭା ସମ୍ବଲପୁର ବିଷୟରେ ସବୁ କଥା ବୁଝିନେଇ ଟିକିଏ ମୁରୁକି ହସା ହେଲା । ତା ପରେ କହିଲା—ଗୁମ୍ଫ ଏଇ ଗୁଡ଼ ଏ କଥାଟା କ'ଣ ମୋ ଝିଅମାନଙ୍କୁ ବଳାଇ ଯିବ । ହଉ ଆପଣ ଏଣିକି ଶାନ୍ତିରେ ନିଃଶ୍ୱାସ ମାରନ୍ତୁ । କାଲିଠୁ ମୋ' ସାନଝିଅ ଚମ୍ପାବତୀ ଆସି ଆପଣଙ୍କ ଘରେ ରହିବ । ବାହାଘର ସରିଗଲାରୁ ଯେ ଯାହା କରିବ ସେ କଥା ପୁଣି ଜାଣି ପାରିବେ ଯେ ?

ରଜା ଖୁବ୍ ଖୁସି ହୋଇଗଲେ । ବେଶ୍ୟା ଝିଅ ଚମ୍ପାବତୀ ଆସି ରଜା ଘରେ ରହିଲା । ନାଁ ହେଲା ତା'ର ମୀରକୁମାରୀ । ସମସ୍ତେ ତାକୁ ଜେମାଦେଈ ବୋଲି ଡାକିଲେ । ସେ ବି ତା ଭୂମିକା

ଛଳନ କଥା ବାର୍ତ୍ତା ବଦଳାଇ ଦେଲା । ବେଶ୍ୟା ଝିଅକୁ ବା କୋଉ ଯାଇଁ ଅଭିନୟ କରି ନ ଆସେ ।

କଥାରେ ଅଛି—କେଣିକ ଯାଉଛି ବଡ଼େଇ ।
ମଟେ ଦଇବ ନେଉଛି କଡ଼େଇ ।

ସାରୁ ଭିତରେ ମାରୁ—ଆମ୍ବ ଭିତରେ ପାରୁ ଅଛି ବୋଲି ଜାଣେ ବା କଏ ? ସତ୍ୟ ହୋଇଛି ବରାବର ହେବ । ସୁନାଲକ୍ଷ୍ମି ବୋହୂ ଘରକୁ ଆସିଲେ ଘର ପୂରି ଉଠିବ ବୋଲି ସମ୍ବଲପୁର ରଜା ଯାକଯମକରେ ଆୟୋଜନ କଲେ । ଦେଖୁ ଦେଖୁ ଦିନ ବି ଗଡ଼ି ଗଡ଼ି ଚାଲିଲା । କୁଳପରଂପରା ଅନୁସାରେ ବିଧି ବିଧାନ ଆୟୋଜନ କରି ଖାଲି ତିଥିଟାକୁ ଅନେଇଥାନ୍ତି ।

ତିଥି ଆସିଲା । ରଜାଘର ବିଭା । ବର ସୁନା ପାଲିଙ୍କିରେ ବସି ବାଦ୍ୟନାଦରେ ଦୁନିଆ କମ୍ପାଇ ପହଞ୍ଚିଲା ଶଶୁର ରାଜ୍ୟରେ । ବାଣ ନିଶାଣ ରୋଷଣୀରେ ଖଣ୍ଡ ମଣ୍ଡଳ ଦୁଲୁକି ଉଠୁଥାଏ । ହଜାର ହଜାର ଦେଖଣାହାରି ଜମା ହୋଇଥାନ୍ତି । ଗହ ଗହ ନାଦରେ ଜାଗା ଖଣ୍ଡିକ କମ୍ପି ଯାଉଥାଏ । ସବୁ ଆଡ଼ୁ ଶୁଭୁଥାଏ ଖାଲି ସାବାସ ସାବାସ ।

ରୋଷଣୀ ସରିଲା । ବାଟ ବରଣ କରି ବରକୁ ନେଲେ । ମହା ପ୍ରସାଦ ସେବା ବଢ଼ିଲା । ରଜାଘର ସେଠି ଅଭାବ ବା ଅଛି କ'ଣ । ବିଧି ବିଧାନରେ କାହାଘର କାମ ବଢ଼ିଲା । ବରଯାତ୍ରୀ-ମାନେ ଠା' ପୀଢ଼ାରେ ବସି ସାରିଲେ । ଯୌତୁକ ପସର ତାଲିକା ପଢ଼ା ହେଲା ।

ତା'ପରେ ବର ବାହୁଡ଼ା । ସେ ସବୁରେ ବଳାସପୁର ରଜା ଡେରି କଲେ ନାହିଁ । ମନ ମାନିଲା ଭଳି ଖୁବ୍ ଦାନ ଯୌତୁକ ଦେଲେ । ଝୁରା ମାଳା ମୋତି ମାଣିକ୍ୟର ଗହଣା । ସୁନାରେ ସବୁ ଜଡ଼ୋଇ ହୋଇଥାଏ । ପାଟ, ପିତାମ୍ବରୀ ଭଳକ ଭଳ ଶାଢ଼ୀ ।

ଝୋଇଁ ପାଇଁ ହାର, ମୁଦ, ଖଣ୍ଡୁା, ଢାଲ, ହାଣ୍ଡି, ଘୋଡ଼ା ଯାହାକିଛି ରଜାଘର ରୀତି ସେହି ହିସବରେ ଯୌତୁକମାନ ଦେଇ ଖୁବ୍ ଖୁସିରେ ବିଦା କରି ଦେଲେ ।

ମନ କଥା ମନରେ ଥାଏ !

ପୁଅ ବୋହୂ ପାଇ ସମ୍ବଲପୁର ରଜା ଯେତିକି ଆନନ୍ଦ, ରାଣୀ ତା ଅପେକ୍ଷା ଅତିଗୁଣବେଶୀ । ତାଙ୍କ ଗୋଡ଼ ମୋଟେ ତଳେ ଲାଗୁ ନ ଥାଏ । ସୁନା କୁଣ୍ଢେଇଠୁ ବଳିକରି ବୋହୂଟିର ଯତ୍ନ ନେଉଥାନ୍ତି । ତଳେ ତଳେଇ ଦଉ ନ ଥାନ୍ତି । ସମସ୍ତଙ୍କ ଆଗରେ ତା' ରୂପଗୁଣର ପ୍ରଶଂସା କରୁଥାନ୍ତି । ମାତ୍ର ହେବ ଅବା କଣ— କିଏ କହିଛି ପରା—

କାଳ ନାଗୁଣୀ ଟେକିଛି ଫଣା
ତୋତେ କରିଦେବ କାଠବଣା

ତେଣୁ କାଳ-ନାଗୁଣୀ ଆସିଛି । ଛଳନାର ଭିତରେ ଭର୍ତ୍ତି କରି ଆଣିଛି ଅଳ ଅଳ ବିଷ । ସେହି ବିଷଜଳାରେ ସମ୍ବଲପୁର ରାଜା-ବଂଶକୁ ଜାଳି ପୋଡ଼ି ମାରିବ । ତେବେ ଯାଇ ହେବ ପ୍ରତିଶୋଧ ! ମା ତା'ର ଲକ୍ଷେ ପାଇଛି, ଆହୁରି ଲକ୍ଷେ ପାଇବ ।

ବର ଶାଶୁଙ୍କ ଝିନ-ଗୁଡ଼ାକ ଖୁବ୍ ସୁଖରେ କଟୁଥାଏ । ପୁରୁଷର ମନ କିଣିବା କଥା କ'ଣ ବେଶ୍ୟାର ଅଜଣା ଅଛି ? ମିଠା ମିଠା କଥା, ଅଯାଚିତ ସ୍ନେହ, ପ୍ରୀତିଛଳନ, ଅଭିମାନ – ନାନା ପ୍ରକାର ହାବ ଭାବ ହାରା ଧର୍ମକୁମାରକୁ ସେ ବାନ୍ଧି ପକାଇଲା । ବାପ ମା'ଙ୍କର ସେଥିପ୍ରତି ଦୃଷ୍ଟି ନ ଥାଏ । ବରଂ ବୋହୂର ଏଗୁଡ଼ିକ ସବୁ ଭଲ ଗୁଣ ବୋଲି ମନେ ମନେ ପୌରୁଷ କରୁଥାନ୍ତି । ଏଣେ ଧର୍ମ କୁମାର ତାକୁ ଦଣ୍ଡେ ନ ଦେଖିଲେ ବଣା ହୋଇ ଯାଉଥାଏ । ଏମିତି ଏମିତି ଦିନ କେତେ ଗଲାରୁ ଅବସ୍ଥା ଗୋଟିଏ ପ୍ରକାରକୁ ଆସିଲା ।

ମାର-କୁମାରୀ ଓରଫ୍ ଚମ୍ପାବତୀ ବେଶ୍ୟା ଦେଖିଲା, ଧର୍ମ-କୁମାର ବର୍ତ୍ତମାନ ପୂରାପୂରି ତା ହାତ ମୁଠା ଭିତରକୁ ଆସି ଯାଇଛି । ଶାଶୁ ଶ୍ୱଶୁର ବି ଖୁବ୍ ଭଲ ପାଉଛନ୍ତି । ଏଣିକି ତା କାମ ସେ ବାଗେଇ ନେଇ ପାରିବ । ତେଣୁ ଦିନେ ଧର୍ମ କୁମାରକୁ କହିଲା, ଦୁହେଁଯାକ କିଛି ଦିନ ବନସ୍ତରେ ରହି ବନ ବିହାର କରିବା ପାଇଁ ।

ଧର୍ମକୁମାରର ଖୁସି ନ ଥାଏ ତା କଥା ଭାଙ୍ଗିବାକୁ—ତେଣୁ ମା'ଙ୍କୁ କହିଲା । ମା' ଯାଇ ରାଜାଙ୍କୁ କହିଲେ । ରାଜା ମନ୍ତ୍ରୀଙ୍କୁ ପଚାରିଲେ । ମନ୍ତ୍ରୀ ଏକା କାହିଁକି ପରାମର୍ଶ ଦିଅନ୍ତେ ସୁତରାଂ ପାଞ୍ଚ ମିଶି ଅମାତ୍ୟ ସମସ୍ତଙ୍କ ଦରବାରରେ ଆସୁ ବୋଲି ବରାଦ କଲେ ।

ସଭା ବସିଲା । ଅମାତ୍ୟମାନେ ବସି ବିଚାର କଲେ । କଥା ହେଲା, ବନସ୍ତରେ ରହିବାର କିଛି ଆପତ୍ତି ନାହିଁ । ସଙ୍ଗରେ ଦାସ-ଦାସୀ, ପରିବାରୀ, ଦେହ ରଖୁଆଳମାନେ ଯାଆନ୍ତୁ । ଉପଯୁକ୍ତ ତମ୍ବୁର ବ୍ୟବସ୍ଥା କରାଯାଉ । ଯେତେଦିନ ପୁଅ ବୋହୂ ବଣରେ ରହି ବନ ବିହାର କରିବେ, ସେତେଦିନ ପର୍ଯ୍ୟନ୍ତ ଖାଦ୍ୟ ସାମଗ୍ରୀମାନ ଗାଡ଼ି ଶଗଡ଼ରେ ଯାଉ ।

କଥାଟା ସ୍ଥିର ହୋଇ ଯିବାରୁ ବୋହୂ ଓରଫ୍ ଚମ୍ପାବତୀ ବେଶ୍ୟାର ମନ ଆନନ୍ଦରେ କୁରୁଳି ଉଠିଲା । ଧର୍ମ କୁମାର ତ ତା ଫାନ୍ଦରେ ପଡ଼ିଛି । ତାର ବା ଖୁସି କ'ଣ । ମୋଟ ଉପରେ କହିବାକୁ ଗଲେ, ତା ଖୁସିରେ ସ୍ୱାର ଖୁସି । ତା ଦୁଃଖରେ ସ୍ୱାର ଦୁଃଖ । ସେ ହସିଲେ ସେ ହସିଲା । ସେ କାନ୍ଦିଲେ ସେ କାନ୍ଦିଲା ।

ପ୍ରବାଦ ଅଛି—ଥରେ ଜଣେ ରାଜା ତାଙ୍କ ବୟସ୍ୟ ପଣ୍ଡିତଙ୍କୁ ଲାଜ ଦିଆଇବା ପାଇଁ ଗୋଟିଏ ବେଶ୍ୟାକୁ ହାତକରି ତାଙ୍କୁ ଲଣ୍ଡା କରାଇ ଦେଲେ । ପଣ୍ଡିତେ ଏ କଥା ଜାଣିପାରି ଛଦ୍ମ ବେଶରେ

ଯାଇ ରାଣୀଙ୍କୁ କହିଲେ—ମହାଦେଈ ! ରଜା ଘୋଡ଼ା ହେବେ, ଆପଣ ତାଙ୍କ ଉପରେ ବସିବେ । ସେ ଘରଯାକ ଆପଣଙ୍କୁ ପିଠିରେ ବସାଇ ଘୋଡ଼ା ଭଳି ହିଁ ହିଁ ହସିବେ ଓ ଘରଯାକ ବୁଲିବେ । ଏ କଥା ନ କଲେ ସାତଦିନ ପରେ ନିଶ୍ଚେ ଆପଣଙ୍କୁ ବିଧବା ଯୋଗ ଅଛି ।

ରାଣୀ ପ୍ରମାଦ ଗଣିଲେ । ରଜାଙ୍କୁ ଡକାଇ ସମସ୍ତ କଥା ଜଣାଇଲେ । ରଜାଙ୍କର ତ ପୁଣି ମୃତ୍ୟୁକୁ ଭୟ ଅଛି । ତେଣୁ ସେ ପଣ୍ଡିତଙ୍କ କହିବା ଅନୁସାରେ କାର୍ଯ୍ୟ କଲେ ।

ପଣ୍ଡିତ ଗୁପ୍ତ ଭାବରେ ସବୁକଥା ଜାଣିଥାନ୍ତି । ପରଦିନ ସକାଳୁ ଦରବାରରେ ରଜା ପଣ୍ଡିତଙ୍କୁ ପରିହାସ ଛଳରେ ପଚାରିଲେ—

କେବଣ ଅର୍ଥେ ଲଣ୍ଡିତ ମୁଣ୍ଡଂ

ପଣ୍ଡିତେ କହିଲେ—ଯେବଣ ଅର୍ଥେ ହିଁ ହିଁ କୁଣ୍ଡଂ

ରଜା କହିଲେ—କିଂ କୁର୍ବନ୍ତି ନ କୁର୍ବନ୍ତି କାମିନୀ ବଶଗା ନରାଃ

ପଣ୍ଡିତ କହିଲେ—ଯତ୍‌କାମିନ୍ୟା ପ୍ରସାଦେନ ନୃପତି ଘୋଟକାୟତେ ।

ପାଠକ ପାଠିକା ବୃନ୍ଦ ଏଥିରୁ ଜାଣିବେ—

ଯେଉଁ ଜନ ହୁଏ ରମଣୀ ବଶ
ରହେ କି ତା'ର କର୍ମ ଧର୍ମ ଯଶ ।

ରଜାଙ୍କ ଆଦେଶ ଅନୁସାରେ କାମ । ପୁଣି ବନ ବିହାର କରି ଯିବେ ବୋଲି ବୋହୂଙ୍କର ଶ୍ରଦ୍ଧା ବଳିଛି । ଏଣୁ ଦଣ୍ଡେ ମାତ୍ର ବିଳମ୍ବ କରିବାର କଥା ନୁହେଁ । ଯେତେ ଶୀଘ୍ର ପାରନ୍ତି ନିଘୋଡ଼ ଜଙ୍ଗଲ ଭିତରେ ସ୍ଥାନ ପ୍ରସ୍ତୁତ କରାଗଲା । ମହାନଦୀ କୂଳ, ବଡ଼ିଆ ବଡ଼ିଆ ଫୁଲ ଫୁଟି ମହକ ଛୁଟୁଥାଏ । ଜାତି ଜାତିକା ଚଢ଼େଇ ଶୁଆ ସାରୀ ଇତ୍ୟାଦି କ୍ରୀଡ଼ା କରୁଥାନ୍ତି । କାପତା ଦଳକୁ ଦଳ ଗୁମୁ ଗୁମୁ ତାନରେ ଉଡ଼ ଗୁଡ଼ୁଥାନ୍ତି । ବାଲିଚର ପଡ଼ିଆ ।

ଦେଶ ଅସଭ୍ୟ ମେଦ୍ଧ କରନ୍ତି ଗଲେବ ପାଦରେ କାଦୁଅ ଲଗିବ ନାହିଁ । ଏଭଳି ଗୋଟିଏ ଜାଗାରେ ତମ୍ବୁ ପଡ଼ିଲା । ଖାଦ୍ୟ ପଦାର୍ଥ ଶଗଡ଼ ଶଗଡ଼ ଯାଇ ସାଇତା ହୋଇ ରହିଲା । ପୁଷ୍ଯାଗ୍ଯ ଚାକର, ଦାସୀ, ପରିବାରୀ, ଯାନ ବାହାନରେ ଚଢ଼ି ଗଲେ । ଧର୍ମକୁମାର ଓ ଚମ୍ପାବତୀ ଗଲେ ହାତୀ ପିଠିରେ ।

ଜଙ୍ଗଲ ଭିତର ହସି ଉଠିଲା । ବନରାଜ ମଣିଷମାନଙ୍କ କୋଳାହଳ ଶୁଣି ହିଂସ୍ର ଜନ୍ତୁ ଗୁଡ଼ିକ ପାଖ ଛାଡ଼ି ଦୂରକୁ ପଳାଇଲେ ଆଶ୍ରା ନେବାକୁ । ଚାକର ବାକରମାନେ ଧନୁଶର ନେଇ ବେଳେ ବେଳେ ଶିକାର କରୁଥାନ୍ତି । ବଡ଼ିଆ ଜମାଜ ଲାଗିଥାଏ, କଥାରେ କହନ୍ତି —

କାହା ମନ ଯାଇ କାହିଁ ।
ଉଙ୍କି ମନ ସିନା ଭାତ ହାଣ୍ଡିରେ—
ମୋ' ମନ ଜାଳିଆ ଠାଇଁ ।

ସାଙ୍ଗ ଲୋକମାନେ ସିନା ଯୁବରାଜଙ୍କ ବନ ବିହାର ଉତ୍ସବରେ ଆନନ୍ଦ ଉପଭୋଗ କରିବା ପାଇଁ ମନ ପକାଇ ବସିଥାନ୍ତି, କିନ୍ତୁ ଚମ୍ପାବତୀ ମନ ଯାଇ—ଆନନ୍ଦକୁ ଶୋକରେ ପରିଣତ କରିବାକୁ ଏ କଥା ଜାଣୁଛି କିଏ ।

ନର ମାୟା ନାରାୟଣଙ୍କୁ ଅଜଣା । ନାରୀମାୟା ମହା ସମୁଦ୍ର ପରି ଅନନ୍ତ, ଅଗମ୍ୟ । ବିଶ୍ଵାସରେ ବିଷ ଦେଇ ଜଣେ ନାରୀ ସ୍ନେହରେ ଛୁରୀ ମାରି ପାରେ ଖୁବ୍ କୌଶଳରେ । ତେଣୁ କବି କହିଛନ୍ତି—ଅଙ୍କ ସ୍ଥିତାପି ଯୁବତୀ ପରି ରକ୍ଷଣୀୟ ।

ଦିନ ପରେ ଦିନ ଗତ ହେବାରେ ଲାଗିଛି । ଖୁବ୍ ହସ ଖୁସିରେ ଥାଆନ୍ତି ସମସ୍ତେ । ବନ ବିହାର ଚାଲିଥାଏ । ମଉଜ ମଜଲିସ୍, ଖୁସି ଗପର ଅଭାବ ନାହିଁ । ଦିନେ ଚମ୍ପାବତୀ ତା ଗେରସ୍ତକୁ କହିଲା ନଦୀରେ ଜଳ କ୍ରୀଡ଼ା କରିବାକୁ ।

କଅଁଳ ଗାଧୁଆବେଳେ ଦୁହେଁ ଯାଇ ନଦୀ ଜଳରେ ପଶିଲେ । ସାଙ୍ଗରେ ଗଲେ କେତେଜଣ ମାତ୍ର ଦାସୀ । ଜଳକ୍ରୀଡ଼ା ଆରମ୍ଭ ହେଲା । ଖବ୍ ପହଁରିଲେ । ପାଣି ଫୋପଡ଼ା ଫୋପଡ଼ି ହେଲେ । ଏଠି ବୁଡ଼ି ସେଠି ଉଠିଲେ, ସେଠି ବୁଡ଼ି ଏଠି ଉଠିଲେ । ଏମିତି ଏମିତି ନାନା ପ୍ରକାର କୌତୁକ ଚାଲିଲା ।

ଚମ୍ପାବତୀ ତ କାମ ହାସଲ କରିବା ପାଇଁ ସୁବିଧା ଖୋଜୁଥିଲା । ଖେଳଟା ଯେତେବେଳେ ଖୁବ୍ ବହଳ ହୋଇ ଆସିଲା, ସଖୀମାନେ ମାତି ଉଠିଲେ, ଠିକ୍ ସେତିକବେଳେ ଧର୍ମ-କୁମାର ମୁହଁକୁ ତିନଚାଳ ମନ୍ତ୍ରପାଣି ଫୋପାଡି ଦେଇ ମିଛରେ ପାଟି କରି ଉଠିଲା—କୁମ୍ଭୀର କୁମ୍ଭୀର ।

ସମସ୍ତେ ଛାନିଆ ହୋଇ କୂଳକୁ ପଳାଇ ଆସିଲେ । ଏକା ଧର୍ମକୁମାରର ପତ୍ତା ମିଳିଲା ନାହିଁ । ଚମ୍ପାବତୀ କପଟରେ କାନ୍ଦି ଉଠିଲା । ଯୁବରାଜଙ୍କୁ କୁମ୍ଭୀର ନେଇଗଲା, ରକ୍ଷାକର, ରକ୍ଷାକର ।

ଆର ପାରିରେ ଜଣେ ମହାତ୍ମା ସାଧୁ ଠିଆ ହୋଇ ଏ ଅନ୍ୟାୟ ଖେଳ ପ୍ରତି ନଜର ରଖିଥିଲେ । ଚମ୍ପାବତୀ ବେଶ୍ୟା ମନ୍ତ୍ର ବଳରେ ଯେତେବେଳେ ଧର୍ମକୁମାରଙ୍କୁ ଗୋଟିଏ ମାଛଟିଏ କରିଦେଲା, ଠିକ୍ ସେତିକବେଳେ ନିରଞ୍ଜନଙ୍କ ମୁହଁରେ ଫିକା ହସଟିଏ ଫୁଟି ଉଠି ମିଳାଇ ଗଲା । ତେଣୁ ସେ ଜଳ ପିନ୍ଧିଥିବା କୌପୁନିରୁ ଟିକିଏ ଛିଣ୍ଡାଇ ପାଣିକି ପକାଇ ଦେଲେ । କହିଲେ—ଧାର୍ମିକଙ୍କୁ ଜଗିଥିବୁ ।

ଏକଥା ଚମ୍ପାବତୀ ମୋଟେ ଜାଣି ପାରିଲା ନାହିଁ । ବରଂକୁ କୁମ୍ଭୀର ନେଲାବୋଲି କପଟରେ ଏଭଳି ଶୋକ କଲା ଯେ ଗଛରୁ ପତ୍ର ଝଡ଼ିବ । ତା ଶୋକ ଦେଖି ରାଜା, ରାଜରାଣୀ ପୁରବାସୀ ସମସ୍ତେ କାନ୍ଦିଲେ । ରାଜବାଟୀକି ଖବର ଗଲା । ରାଜା ରାଣୀ ଶୋକ ଦୁଃଖରେ ଅଧୀର ହୋଇ ବେହୋସ ହୋଇଗଲେ ।

ଯାହା ମନ୍ତ୍ରୀମାନେ ରାଜ୍ୟରୁ ଶହ ଶହ ଜାଲୁଆଙ୍କୁ ଅଣାଇ ନଈରେ ଜାଲ ପକାଇ ଅନେକ ଚେଷ୍ଟା କଲେ । କେଉଁଠି ହେଲେ ଧର୍ମ-କୁମାର କ କୁମ୍ଭୀରର ପତା ମିଳିଲା ନାହିଁ । ଖାଲି ଗୁଣ୍ଡାଏ ମାଛ ମଲେ ।

ରଜା ପୁଅ ତ ମନ୍ତ୍ର ବଳରେ ଗେଣ୍ଡାମାଛଟିଏ ହୋଇଗଲା, ତା'ର ଆଉ ଭୟ କ'ଣ । ପାଣିରେ ବୁଡ଼ ପହଁଣ ଖେଳ ଖେଳି ଭାରି ଖୁସିରେ ସୁଅ ମୁହଁରେ ଖସିଗଲା ଖୁବ୍ ତଳକୁ ।

ଏଣେ ସମ୍ବଲପୁର ରାଜବାଟୀରେ ଘୋଟିଗଲା ଦୁଃଖ ଶୋକର ଉଆଁସୀ ରାତି । କାହାର ମନରେ ସୁଖ ଶାନ୍ତି ନାହିଁ । ରାଜା ରାଣୀ କାନ୍ଦି କାନ୍ଦି ପାଗଳ ହୋଇଗଲେ । ଲୋକଙ୍କର କାନ୍ଦଣାରେ ରାଜଭୂମି ନୀରସ ହୋଇଗଲା । କେବଳ ଭାଗ ଛନ୍ଦାଗ ଚମକାଇ ହସୁଥିଲେ ଅଲେଖ ବାବା । ସେ ହସରେ ପୂରି ରହିଥିଲା ପୂରା ଷଡ଼ଯନ୍ତ୍ରର ଛଳନା ।

ରଜା ରାଣୀ ଭଦ୍ରେ ଦେଖିକରୁ ବେଳ ବେଶି ହତାଶ ହୋଇ ପଡ଼ିଲେ । ତାଙ୍କ ସ୍ୱାସ୍ଥ୍ୟ ଫଟାଇ କହିବାକୁ ଲାଗିଲା ଖାଲି ଅଣରୁଣ ପବନ । ମୁଣ୍ଡ ଦହି ଗରମ ହୋଇ ପାଣି ଫାଟିଗଲା । ଦେଖୁ ଦେଖୁ ତାହାଙ୍କ ମାନସିକ ଜ୍ଞାନଗାରିମା ନଷ୍ଟ ହେବାରୁ ସେ ଏକପ୍ରକାର ପାଗଳ ପାଗଳୀ ହୋଇ ପଡ଼ିଲେ । ଏ ଅବସ୍ଥା ଦେଖି ବିଶ୍ୱାସୀ କର୍ମଚାରୀମାନେ ତାଙ୍କୁ ଖୁବ୍ ହୃପାଜତରେ ନେଇ ଗଲେ ରାଜ-ବାଟୀକୁ । ବନନ୍ତରୁ ତମ୍ବୁ ଫମ୍ବୁ ଉଠାଇ ନଆଗଲା । ବିଧବା ବୋହୂ କାନ୍ଦି ବୋବାଇ ସଖୀମାନଙ୍କ ଗହଣରେ ବି ଗଲା ।

ହିନ୍ଦୁ ଧର୍ମ ଅନୁସାରେ ଶୁଦ୍ଧିକ୍ରିୟା କରାଯିବାର କଥା । ମାତ୍ର ଦେଖା ହେଲେ ଅଯାଚିତ ଭାବରେ ଜଣେ ସନ୍ନ୍ୟାସୀ । ରଜା ରାଣୀ ତ ପାଗଳ । ତାଙ୍କୁ ବା କ'ଣ କହିବେ । ମନ୍ତ୍ରୀକୁ ମାତ୍ର ଜଣାଇ ଦେଲେ ଆକସ୍ମିକ ମୃତ୍ୟୁ ! ତେଣୁ ବାରବର୍ଷ ପର୍ଯ୍ୟନ୍ତ ଅପେକ୍ଷା କରାଯାଉ ।

ବାରବର୍ଷ ପରେ ଜୋହ୍ନୂକୁ ବିଧବା କରାଯିବ । ସେ ପର୍ଯ୍ୟନ୍ତ ଶୁଣ୍ଢି ହିସ୍ସା ବନ୍ଦ ରଖନ୍ତୁ ।

ମନ୍ତ୍ରୀ ଏ କଥା ରାଜ୍ୟରେ ପ୍ରଚାରକରି ଶୁଣ୍ଢିହିସ୍ସା ବନ୍ଦ କରାଇ ଦେଲେ । ମାର କୁମାରୀ ଓରଫ୍ ଚମ୍ପାବତୀ-ବେଶ୍ୟା ଖୁବ୍ ପ୍ରତିବାଦ କଲା । କହିଲା—ବିଧବା ହେଲାପରେ ମୁଁ ମୁଣ୍ଡରେ ସଧବା ସିନ୍ଦୂର ଘେନିବ କିପରି ?

ମନ୍ତ୍ରୀ କହିଲେ—ନିଶ୍ଚୟ ଘେନିବାକୁ ପଡ଼ିବ । ଜଣେ ସାଧୁଙ୍କର ହୁକୁମ । ଆମେ ହିନ୍ଦୁ ହୋଇ ନାସ୍ତିକ ହେବା କିପରି ? ସଂସାର ଲୋକେ ଯାହାଙ୍କୁ କହନ୍ତି ପଚ୍ଛକେ ତାଙ୍କ ଆଜ୍ଞା ପାଳିବାକୁ ପଡ଼ିବ ।

ଚମ୍ପାବତୀର ସାଧୁଙ୍କ ଉପରେ ମନେ ମନେ ବହୁତ ରାଗ ଆସିଲା । ଏଭଳିକି ସେତେବେଳେ ଯଦି ସେ ତା ସାମନାରେ ପଡ଼ିଥାନ୍ତା ତେବେ କିଛି ନା କିଛି ଗୋଟାଏ କାଣ୍ଡ ଘଟାଇ ବସିଥାନ୍ତା ସେ ।

ଯାଉ, ସେ ସବୁ ଯାହା ତ ହେବାର ହୋଇଗଲା । ଏଣିକି କୌଶଳରେ କିପରି ସେ ତା କାମ ହାସଲ କରି ଯଥା ସ୍ଥାନକୁ ପଳାଇ ଯିବ, ତାର ବାଟ ଖୋଜିବାକୁ ଲାଗିଲା । କଥାଟା କିନ୍ତୁ ଖୁବ ସାବଧାନରେ ଥାଏ । କୌଣସି ଲୋକ ତା ହାବଭାବରୁ ବିନ୍ଦୁ ବିସର୍ଗ ପର୍ଯ୍ୟନ୍ତ ଜାଣିପାରୁ ନଥାନ୍ତି ।

ଖୁବ୍ ଚତୁରୀ ସେ । ମନ କଥା ମନ ଭିତରେ ଗୋପନ ରଖି ଉପରେ ଉପରେ ଖୁବ୍ ଦୁଃଖ କରୁଥାଏ । ପାଗଳ ରଜା ରାଣୀଙ୍କ ସେବାରେ ଟିକିଏ ହେଲେ ହେଳା କରୁ ନଥାଏ । ରାଜବାଟୀରେ ରକ୍ଷଣା ବେକ୍ଷଣା କାର୍ଯ୍ୟ ଚଳାଉଥାଏ ସୁରୁରୁଖରେ । ଦୃଷ୍ଟି ଥାଏ ମନ୍ତ୍ରୀ ଉପରେ । ଏକା ମନ୍ତ୍ରୀଟାକୁ କୌଣସି ଉପାୟରେ ନିପାତ କରି ଦେଲେ

ତେଣିକି ଆଉ କିଛି ଭୟ ରହିବ ନାହିଁ । ତେଣୁ ସେ ସେହି ବାଗରେ ମୁଣ୍ଡ ଖେଳାଇବାରେ ଲାଗିଥାଏ ।

ଧର୍ମକୁମାର ସେହ୍ମାମାଛଟିଏ ହୋଇଯିବାରୁ ପାଣିରେ ପହଁର-ିବାକୁ ତାକୁ ଭାରି ଭଲ ଲାଗିଲା । ସେ ପହଁରି ବୁଡ଼ି ଡେଇଁ ବୁଲିଗଲା ଚଳି ଆଡ଼େ । ସାଧୁ ପକାଇଥିବା କୌପୀନ ଖଣ୍ଡିକ ଜଆଟିଏ ହୋଇ ବୁଲୁଥାଏ ତା ଆଗେ ଆଗେ । ମାଛଟି ମଧ୍ୟ ତାକୁ ଛାଡ଼ି ନ ପାରି ତା ପଛେ ପଛେ ବୁଲୁଥାଏ ।

ଗଣିଆ ଜଙ୍ଗଲ ଛାଡ଼ିବାକୁ ଆଉ କିଛିଦୂର ଅଛି । ମଣିଭଦ୍ରା ପର୍ବତ ନସା ପାଖରେ ଜଙ୍ଗଲି ମଣିଷ ଜଣେ·ପେଲେଣା ଖଣ୍ଡେ ଘେନ ମଛ ଧରୁଥାଏ । ତାର ନାଁ ହେଉଛି କାଳୁଆ ଯୁଆଙ୍ଗ । ଜାତିରେ ମଧ୍ୟ ଯୁଆଙ୍ଗ । ସେ ଆଦିମ ଅଧିବାସୀ ହେତୁ ଘୋର ଜଙ୍ଗଲ ମଧ୍ୟରେ ପଣ କୁଡ଼ିଆ କରି କାଳ କଟାଏ । ଯୁଆଙ୍ଗ ପଲ୍ଲୀରେ ତାକୁ ସମସ୍ତେ ସର୍ଦ୍ଦାର ବୋଲି ଡାକନ୍ତି । ସତକୁ ସତ ତାଙ୍କ ଜାତିରେ ମୁଖିଆ ଲୋକ ସେ । ତା ହୁକୁମକୁ ଶହ ଶହ ଭେଣ୍ଡିଆ ଟୋକା ତଳେ ପକାନ୍ତିନି । ମରିବାକୁ ଦର୍କାର ପଡ଼ିଲେ କାଳୁଆ କଥାରେ ଯାଇ ମରଣ ମୁହଁରେ ବି ଠିଆ ହୁଅନ୍ତି ।

କାଳୁଆ ତା ଗାଁର ସମସ୍ତଙ୍କୁ ଗୋଟିଏ ମୁଠାରେ ରଖିଥାଏ । ଦର୍କାର ପଡ଼ିଲେ ଜୀବନ ଦେଇ ସାହାଯ୍ୟ କରେ । ତେଣୁ କାଳୁଆକୁ ସମସ୍ତେ ଭକ୍ତି କରନ୍ତି ଯେମିତି, କାଳୁଆ ବି ସମସ୍ତଙ୍କୁ ଶ୍ରଦ୍ଧାକରେ ସେମିତି ।

କାଳୁଆର ଘରଯା ଓ ତା'ର ଗୋଟିଏ ଝିଅ । ଘରଯା ନାଁ ଝୁଲିଆ; ଝିଅ ନାଁ କୁରେଇ । ଗୁଣୀ ଗାରେଡ଼ି ବଇଦ୍ୟାରେ ମା' ଝିଅ ଦୁହେଁ ତାକୁ ବଳି ବଳି । କେହି କାହାକୁ କମ୍ ନୁହନ୍ତି । କୁରେଇଭଗ ଯୌବନରେ ପାଦ ଦେଉଥାଏ । ତାର ବଳଣା ବଳିଲା ଭଳିଆ ବାହୁ । ଗୋଲ ମୁହଁ । ଦାନ୍ତ

ଗୁଡ଼ିକ ମୁକ୍ତା ପରି । ଝୁଣି ଫୁଲ ଭଳି ନାକ । ଆଖି ଯୋଡ଼ିକ ଉଜ୍ଜ୍ୱଳ ଯେମିତି ଢଳ ଢଳ ସେମିତି । ମୋଟ ଉପରେ କହିବାକୁ ଗଲେ ବଣ ପର୍ବତ ରାଜ୍ୟରେ ଉଜ୍ଜ୍ୱଳମୟ ଚନ୍ଦ୍ରମା ସେ । କାଲୁଆ ସର୍ଦ୍ଦାର ତା'ର ଜୀବନ ଅପେକ୍ଷା ଅଧିକ ଭଲପାଏ ।

ଘର ତାଙ୍କର ବୌଦ୍ଧ ରାଜ୍ୟରେ ଥାଏ ସେ କାଳକୁ । ଜଙ୍ଗଲୀ ଅନାର୍ଯ୍ୟ ହେଲେ ବି ନିଜ ନିଜର ବାନ୍ଧବଜନଙ୍କୁ ଆଶା କରି ଖୁବ୍ ଆନନ୍ଦରେ ଥାଆନ୍ତି ସେମାନେ । କୁରେଇ ବାପା ମାଆଙ୍କଠାରୁ ସ୍ନେହ ଆଦର ପାଇ ସୁନା କୁଣ୍ଢେଇଟି ଭଳିଆ ବିଚରଣ କରୁଥାଏ ।

କାଲୁଆ ସେଦିନ ପେନ୍ଥେଣା ଗେଞ୍ଜି ଲେଞ୍ଜି ନଷ୍ଟାନ୍ତ ହେଲାଣି । ଗୋଟିଏ ହେଲେ ଜଣ୍ଡିଆ କି କେଉଣ୍ଡୀ ଧରିବାକୁ ନାହାନ୍ତି । ତେଣୁ ବହୁତ ଜନ୍ତୁ ବିରକ୍ତ ହୋଇ ବସିଛି ଲେଞ୍ଜଟି ଯିବାକୁ । ଏମିତି ବେଳେ ଆଗରେ ତାର ବୋହ୍ନି ମାଛଟା ଡେଇଁ ପଡ଼ିଲା ଓ ଶିରାକାଟି ପହଁରି-ବାକୁ ଲାଗିଲା । କାଲୁଆ ତା ଇଷ୍ଟ ଦେବୀଙ୍କୁ ନମସ୍କାର କରି ପେଲେଣା ଚାଲିଲ ହେଲା ମାତ୍ରେ କଅଁଳା ବାଳୁଙ୍ଗା ପରି ପଶିଗଲା ସେ ମାଛଟା । କାଲୁଆ ଆନନ୍ଦ କହିଲେ ନସରେ । ସେ ଆଜି ଜନ୍ମେ ଅପେକ୍ଷା ନକରି ଦଉଡ଼ିଲା ଘରକୁ । କୁରେଇ ତା ବାପ ବାଟକୁ ଅନାଇ ବସିଥିଲା ।

କାଲୁଆ କୁରେଇ ଆଗରେ ମାଛଟା ପକେଇ ଦେଇ କହିଲା—ଚଞ୍ଚଳ କାଟି ଧୋଇ କର କୁରେଇ । ବଡ଼ିଆ ମାଛ । ଥାନପତି ଦୟାରୁ ଆଜ ମୁଁ ଖୁବ୍ ଜିତିଛି ।

କୁରେଇ ଖୁସି ହୋଇ ଦଉଡ଼ିଲା ପାଣିକି ପାଇଁ । ପ୍ରଭୁ ଅଲେଖ ନିରଞ୍ଜନ ଭାବିଲେ ଧର୍ମକୁମାର ମାଛ ହୋଇ ନିଜର ଜ୍ଞାନ ଗାରିମା ପାସୋରି ପକାଇଛି । ଏତେବେଳେ ମୁଁ ଯଦି ତାକୁ

ରକ୍ଷା ନ କରିବ, ତେବେ ବସ୍ତୁଗର ପ୍ରାଣଟା ଅଛଟେ ବାହାରିଯିବ। ଏଣୁ ଲୀନ ହୋଇ ତା ସୁଷୁମ୍ନା ନାଡ଼ିରେ ଯାଇ ବସି ପଡ଼ିଲେ ।

କୁରେଇ ମାଛ କାଟିବାକୁ ଯେମିତ ପନକା ସଜାଡ଼ି ବସିଛି, ସେମିତ ସେ ମାଛଟା—କହିଲା—

ବସ୍ତ୍ର ଧର୍ମ ଯେବେ ଅଛନ୍ତି କୁରେଇ
ପନକା ରଖିବେ ଘରେ ।
ବଶ୍ୱାସଘାତକୀ ତମ୍ପାବତୀ କଥା
ଭାବିଲେ ମୋ ଦେହ ଥରେ ।

କୁରେଇ ଚମକ ପଡ଼ି ଚରିତବ ମାଝ ଉଠିଲା । ମାଛଟା ମଣିଷ ଭଳିଆ ଗୀତ ଗାଉଛି ଶୁଣି ତାକୁ ଏଭଳି ତାଜୁବ ଲାଗିଲା ଯେ, ସେ ସେଇଠି ବସି ଡାକ ପକାଇଲା ତା ମାଆକୁ ।

ମା' ଆସି ପଚାରିଲା କଣ କଲୁ ?

କୁରେଇ କହିଲା ଶୁଣିଲୁ ନାଁ, ମାଛଟା ମଣିଷ ଭଳିଆ ଗୀତ ଗାଉଛି ।

ବୁଢ଼ୀ କହିଲା—ସତେ ?

ମାଛ ପୁଣି ଗାଇଲା—

ମାପ୍ୟାବତୀ ଫାନ୍ଦେ ପଡ଼ି ରଜା ପୁଅ
କପଟ ନ ପାରିଲା ଜାଣି,
ମାଛ ରୂପେ ଆସି ଆଶ୍ରା କରିଥିଲା
ଚିନା ମହାନଦୀ ପାଣି ।
ତୋ ବାପ ଆଣିଲା ଖାଇବା ଲୋଭରେ
ତଣ୍ଡି ଚପୁଅଛୁ ବୁଝି,
ମୋ ବାପ ମରିବ ଝୁରି ବୋହୂ ସଙ୍ଗେ
କାଳ କାଳେ ଯିବ ମୁଝି ।

ଝୁଲିଆ କହିଲା—ଆରେ କୁବେରଇ ? ମାଛ ନୁହେଁଲେ, ଏ କୋଉ ଠାକୁରଙ୍କ କି କୋଉ ବଡ଼ଲୋକର ପୁଅ । କାହାରି ମନ୍ତ୍ର ବଳରେ ମାଛ ହୋଇ ଯାଇଛୁ । ତୁ ଯାଇ ଆଣିତ ମୋ ମନ୍ତ୍ରପେଡ଼ି ।

କୁବେରଇ ଦଉଡ଼ିଲା । ଗମ୍ଭୀର ଘର ଠଣାରେ ଥିବା ମନ୍ତ୍ର ପେଡ଼ିଟା ଆଣିଲା ବେଉ ହାତରେ ଥାଉ । କହିଲା—ହେ ପ୍ରଭୁ ଆନାପତି ! ବଗୁବକୁ ନିଜ ରୂପ ଦିଅ ।

ଝୁଲିଆ ମନ୍ତ୍ର ପେଡ଼ି ଫିଟାଇ କାଢ଼ିଲା ଗୋଟିଏ ନାଲି ଟିକଟିକ ଗୋଟ ପଥର । ମନ୍ତ୍ରପଢ଼ି ତାକୁ ସାତଥର ଫୁଙ୍କିଦେଲା ଓ ମୁଣ୍ଡରେ ଲଗାଇ କହିଲା

ଯେବେ ହୋଇଥିବୁ ମଣି ସ୍ୱଜନ
ନାମ ରଖିବାକୁ ହେବୁ ସ୍ୱଜନ ।
ମାଛ ହୋଇଥିଲେ ମରିବ ତେଇଁ
ମଣିଷ ହୋଇଲେ ଉଠିବ ଚେଇଁ ।
ଝୁଲିଆ କହୁଛି ଉଠ୍
ମନ୍ତ୍ର ନ ହୋଇବ ଝୁଟ୍ ।

ପଥର ଖଣ୍ଡିକ ନେଇ ରେହିମାଛ ମୁଣ୍ଡରେ ଲଗାଇ ଦେବା ମାତ୍ରେ ଗୋଟିଏ ଦିବ୍ୟ ସୁନ୍ଦର ଯୁବକ ହୋଇ ଠିଆ ହୋଇଗଲା ସେ । ଝୁଲିଆ ଓ କୁବେରଇ ଆଶ୍ଚର୍ଯ୍ୟ ହୋଇ ତାକୁ ଅନାଇ ରହିଲେ । କାହାରି ମୁହଁରୁ କଥା ବାହାରିଲାନି ।

କାଳୁଆ ଯାଇଥିଲା ବଜାରକୁ । ହଠାତ୍ ଆସି ଏ କାଣ୍ଡ କାରଖାନା ଦେଖି ଚକିତ ହୋଇ ପଡ଼ିଲା । ମଛଟା ଗଲା କୁଆଡ଼େ, ତା ବଦଳରେ ଏ ସୁନ୍ଦର ଯୁବକଟି କିଏ, ଜାଣିବାକୁ ତାର ବହୁତ ଆନନ୍ଦ ହେଲା । ତହୁଁ ସେ ନିଜ ଘରଜାକୁ ପଚାରିଲା—ଏ କଣ ଝୁଲିଆ, ଏ ସବୁ କି କାରଖାନା ଲଗିଛୁ ।

ସ୍ୱପ୍ନ କଥା ଗୋଟି ଗୋଟି କରି ସବୁ କଥା ବୁଝାଇ ଦେଲାରୁ ସେ ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇ ଧର୍ମ କୁମାରକୁ ପଚାରିଲା, ତୁମେ କିଏ ମହାତ୍ମା ! ମାଛଟିଏ ହୋଇ ମୋ ହାତରେ ଧରା ପଡ଼ିଲି କାହିଁକି ?

ଧର୍ମକୁମାର କାନ୍ଦିଲା । ଧୀରେ ଧୀରେ ଗୋଟି ଗୋଟି ହୋଇ ପଛ କଥାଗୁଡ଼ିକ ମନେ ପଡ଼ିଗଲା ତା'ର । ନିଜ ସ୍ତ୍ରୀ ସଙ୍ଗେ ଜଳ-କ୍ରୀଡ଼ା କରୁଥିବାବେଳେ ତା'ର ଯେ ଏଭଳି ଦଶା କାହିଁକି ହେଲା ସେତକ ବୁଝି ନ ପାରି ଠିଆହେଲା ଅବାକ୍‌ ହୋଇ ।

ହଠାତ୍ ଜଣେ ଅଲେଖ ସାଧୁ ଆସି ପହଞ୍ଚିଗଲେ । ତାଙ୍କ ମୁହଁରେ ଲାଗି ରହିଥାଏ ଉଜ୍ଜଳ ହସ । ମୃଦୁ ମଧୁର କଣ୍ଠରେ ପଚାରିଲେ—କି ବାବା ! କ'ଣ ଭାବୁଛୁ ?

କୁମାର କହିଲା—ଆମେ ସ୍ତ୍ରୀ ପୁରୁଷ ଦିହେଁ ଜଳ କ୍ରୀଡ଼ା କରୁଥିଲୁ ବାବା ପୋଖରୀରେ । ତେଣିକି ଘଟଣା କ'ଣ ହେଲା କିଛି ଜାଣିପାରୁ ନାହିଁ । ତା'ପରେ ମୁଁ ଏଠାକୁ କିପରି ଆସିଲି ଓ ଏଇଟା କେଉଁସ୍ଥାନ ?

ସାଧୁ ବାବା ଖୁବ୍ ଜୋରରେ ହସିଲେ । ତାପରେ କହିଲେ—ବୁଝିଲୁ ବାବା ! ତୁ ଯାହାକୁ ବିଭା ହୋଇଛୁ, ସେ ରାଜ-ଝିଅ ନୁହେଁ, ଗୋଟିଏ ବେଶ୍ୟାର ଝିଅ । ତୋ ବାପାଙ୍କ ସଙ୍ଗେ ଶ୍ୱଶୁରର ଶତ୍ରୁତା ଥିବାରୁ ତୁମର ସର୍ବନାଶ କରିବାପାଇଁ ଏ କାଣ୍ଡର ସୂତ୍ରପାତ ହୋଇଛି । ସେ ରାକ୍ଷସୀ ବେଶ୍ୟା ଝିଅ । ଯାଦୁ ବଳରେ ତୋତେ ମାଛ କରି ଦେଇ ପ୍ରଚାର କରିଛି କୁମ୍ଭୀର ନେଇ ଗଲା ବୋଲି । ତେଣୁ ତୋ ରାଜବାଟୀରେ ଘୋଟିଯାଇଛି ଶୋକର ଛାୟା । ବାପ ମାଆ ତୋର ପାଗଳ ପାଗଳୀ ହୋଇ ବଡ଼ ଦୁଃଖରେ ଅଛନ୍ତି । ସେ ରାକ୍ଷସୀ ବେଶ୍ୟା ଝିଅ ବର୍ତ୍ତମାନ ସବୁ ଅକ୍ତିଆର କରି ସାରିଲାଣି ।

ଆଖି ଯାଇ ପଡ଼ୁଛି ମନ୍ତ୍ରୀ ବୁଢ଼ା ଉପରେ । ଖୁବ୍ ଅଳ୍ପଦିନ ମଧ୍ୟରେ ଆହୁରି ବହୁତ କାଣ୍ଡ ଘଟାଇ ଦେବ ସେ ।

ଏକଥା ଶୁଣି ଧର୍ମକୁମାର ରାଗରେ ନାଲ ହୋଇଉଠିଲା । କହିଲା—ମୋତେ ଆଶୀର୍ବାଦ ଦିଅନ୍ତୁ ସାଧୁ ଗୋସାଇଁ ! ମୁଁ ଏହିକ୍ଷଣି ଯାଇ କପଟୀ ସେ ପିଶାଚୀକୁ ଖଣ୍ଡାରେ ହାଣି ଚିକଚିକ କରିଦେବି ।

ସାଧୁ କହିଲେ—ପାରିବୁନି ବାବା ! ଯାଦୁ ମନ୍ତ୍ରରେ ସେ ତୋତେ କଣ ନା କଣ କରି ପକାଇବ । ତେଣୁ ଆମ କଥା ମାନି ତୁ ଏଠି ଯୁଆଙ୍ଗ ପଡ଼ାରେ ଥା । ବୁରେଇକୁ ଆପଣାର କରି ପାରିଲେ ଯାଇ ତାକୁ ଜିଣିବୁ ।

ତାପରେ ସାଧୁ ବାବା ଅନ୍ତର୍ଦ୍ଧାନ ହୋଇଗଲେ । ଧର୍ମକୁମାର କାଳୁଆ ସର୍ଦ୍ଦାର ଘରେ ରହିଲା । ଝୁଲିଆ ବି ତାକୁ ଖୁବ୍ ଆଦର ଯତ୍ନରେ ପାଳିଲା । କାଳୁଆ ଖୁସିରେ ଅଧିର ହୋଇ ଯାଉଥାଏ । ନିଜ ପୁଅଠାରୁ ବେଶୀ ଶ୍ରଦ୍ଧାକରେ । ଦଣ୍ଡେ ନ ଦେଖିଲେ ବାଉଳା ହୋଇ ଉଠେ । ତା ଜ୍ଞାତସାରରେ କୁମାର ଦେହରେ ମାଛିଟିଏ ବି ବସାଇ ଦିଏନି ।

ଧର୍ମକୁମାରର ବଳିଷ୍ଠ ଦେହ ଓ ମୁଖଶ୍ରୀ ଦେଖି ପଲ୍ଲୀର ଯୁଆଙ୍ଗମାନେ ଦେବତା ପରି ମାନୁଥାଆନ୍ତି । କଥାକୁ ତଳେ ପକାଆନ୍ତିନି । ଶିକାର କରି ଗଲେ ଧର୍ମକୁମାର ତାଙ୍କ ଗହଣରେ ଯାଏ । ଟୋକା ଟୋକାମାନଙ୍କ ସଙ୍ଗେ ଖେଳ କୌତୁକ କରେ । କଣ ଫଳ ଓ କୋଳି ତୋଳି ଖାଆନ୍ତି । ବୁରେଇ ପାଇଁ ଆଣନ୍ତି ।

ବୁରେଇ ଧର୍ମକୁମାରକୁ ଖୁବ ଭଲ ପାଉଥାଏ । ଲାଜରେ ମୁହଁକୁ ସାମନା ସାମନି ଅନାଇ ନ ପାରିଲେ ବି ସବୁବେଳେ ଆଡ଼େଇ ଆଡ଼େଇ ଅନାଉଥାଏ । ତା ରୂପଟିକୁ ଦେଖିଲେ ତା ପେଟ ପୂରି ଉଠେ । ମନ ଭିତରେ ପ୍ରେମ ପ୍ରୀତିର କଅଁଳ ଅଙ୍କୁର ଗଜୁରି ଉଠେ ।

ଏ ଭିତରେ ଧର୍ମକୁମାର ବି କୁରେଇକୁ ଖୁବ୍ ଭଲ ପାଇଛି । ତା ହାବ ଭାବ, କଥା, ଚାଲିଚଳନ ତାକୁ ଭଲ ଲାଗିଛି । ଅନାର୍ଯ୍ୟଝିଅ ହେଲେ କଣହେଲା, ତା ଅନ୍ତରର ନିଭୃତ କୋଣରୁ ଦେବତାର ସନ୍ଧାନ ମିଳେ । ରୂପଟି ଗୋଟିଏ ଛାଞ୍ଚରେ ଗଢ଼ା । ଆର୍ଯ୍ୟମାନଙ୍କ ସମାଜରେ ତା'ପରି ସୁନ୍ଦରୀ ଯୁବତୀ ଶହକେ ଗୋଟିଏ ଯୋଡ଼ିଏ ମିଳିବା ମଧ୍ୟ କଷ୍ଟ । କୁରେଇ ଯେତେବେଳେ ତାଙ୍କ ଜାତିର ଗୀତ ପଦେ ପଦେ ଗାଇଦିଏ, ସେତେବେଳେ ସେ ସ୍ୱର ଲୟ; ମୂର୍ଚ୍ଛନାରେ ଯୋଗୀର ମନ ବି ଟଳିଯିବାର କଥା । ଧାଙ୍ଗୁଡ଼ି, ଭରମା ଓ ଛଇନାଚରେ ତା'ପରି ଅଙ୍ଗ ଭଙ୍ଗୀ ଓ ମୁଦ୍ରା ଦେଖାଇବା ଅନ୍ୟ ଝିଅମାନଙ୍କ ପକ୍ଷେ ସମ୍ଭବ ନୁହେଁ । ଏହି ସବୁ କାରଣରୁ ଧର୍ମକୁମାରର ମନେହୁଏ ତାକୁ ଆପଣାର କରି ନେବାକୁ । ହେଲେ ପଛକଥାଗୁଡ଼ାକ ମନେ ପଡ଼ି ମନ ପୁଣି ପଛେଇ ଆସେ । ଏକୁଟିଆରେ ବସି ଭାବେ ।

ଅଶ୍ୱ ପ୍ଲୁତଂଚ ବାସ ଗର୍ଜିତଂ ଚ
ସ୍ତ୍ରୀଣା ଚରିତ୍ର ପୁରୁଷସ୍ୟ ଭାଗ୍ୟ
ନଜାନାନ୍ତି ଦେବତାଃ
କୁତୋଃ ମନୁଷ୍ୟ ।

ଘୋଡ଼ା ଡିଆଁଡ଼ି, ମେଘ ଗର୍ଜନ, ରମଣୀର ମନ, ପୁରୁଷର ଭାଗ୍ୟ ଏ ଚାରିକଥା ଦେବତାଙ୍କୁ ଅଗୋଚର । ମନୁଷ୍ୟ ବା ଜାଣିବ କ'ଣ । ଯାହାହେଉ ଏମିତି ସେମାନଙ୍କ ଦିନ କାଳ ଗତ ହେବାରେ ଲାଗିଛି । ଦିହେଁ ଦିହିଙ୍କି ଇଚ୍ଛା କରୁଥିଲେ ମନ ଖୋଲି ଖୋଲି କଥା-ବାର୍ତ୍ତା ହୋଇ ପାରୁ ନଥାନ୍ତି ।

କାଳୁଆ ସର୍ଦ୍ଦାରର ଇଚ୍ଛା ଧର୍ମକୁମାର ହାତରେ କୁରେଇର ହାତ ଛନ୍ଦିଦେଇ ନିଶ୍ଚିନ୍ତ ହେବାକୁ । ଝୁଲିଆ ବି ସ୍ୱାମୀ କଥାରେ ଏକମତ । ଗାଁର ଟୋକା ଟୋକିଙ୍କଠାରୁ ଆରମ୍ଭ କରି ବୁଢ଼ାବୁଢ଼ୀ

ଯାକ କହନ୍ତି ଆମ ଠାକୁର ପୁଅ (ଧର୍ମ କୁମାର) ହେବ ଏ ବଣର ରଜା । କୁରେଇ ହେବ ତାର ରାଣୀ; ଆମେ ସମସ୍ତେ ପରଜା ହୋଇ ତାଙ୍କ ସେବାରେ ଜୀବନ ବିତେଇବୁ ।

ତେଣେ ଚମ୍ପାବତୀ ଦେଖିଲେ, ଦିନକୁ ଦିନ ସମସ୍ୟାଟା ଭଲ ପଡ଼ି ଆସୁଛି । ତା କାମର ଗଭୀର ସମ୍ବନ୍ଧ କେହି ଜାଣି ପାରି ନାହାନ୍ତି କି ଜାଣି ପାରିବାର ମଧ୍ୟ ଆଶା ନାହିଁ । ତେଣୁ ସେ ଏକବାର ଉଦାସ ହୋଇ ଉଠିଛି । ଦାସ ଦାସୀଙ୍କ ପ୍ରତି ଯଥେଚ୍ଛାଚାର ବ୍ୟବହାର କରି ସମାଲୋଚନା, ଗାଳି ମାଡ଼ ସବୁ ସହିଥାଏ । ପାଗଳ ରାଜା ରାଣୀଙ୍କର ସ୍ୱର ବା କଣ । ସେ ମୂକ ପ୍ରତିମା ଭଳି ସବୁ ଦେଖି ଦେଖି ପାରନ୍ତିନି କି ଶୁଣି ଶୁଣି ପାରନ୍ତିନି । ଏକା ମନ୍ତ୍ରୀ-ବୁଢ଼ାଙ୍କୁ ଉପରେ ଗୋଟାଏ ସନ୍ଦେହ ଘନେଇ ଆସିଲା । ତେଣୁ ସେ ଖୁବ୍ ସତର୍କ ଦୃଷ୍ଟି ରଖିଲେ ।

ଦିନକର କଥା । ରାତି ଦଶା ଗଡ଼ୁଛି । ହଠାତ୍ ଗୋଟାଏ ଗଛ ଉଡ଼ିଆସି ପହଞ୍ଚିଲା ରାଜବାଟୀର ପଛପଟେ । ତା ଉପରେ ମିଞ୍ଜି-ମିଞ୍ଜିଆ ଆଲୁଅଟାଏ ଜଳୁଛି । ଗୋଟିଏ ସ୍ତ୍ରୀ ଲୋକ ଗଛର ଦୋକନ୍ଧା ଭିତରେ ଗୋଡ଼ ଭିଡ଼ି ଦେଇ ବସିଛି । ଏ କଥା ଅନ୍ୟ ଲୋକମାନେ ଜାଣି ନ ପାରିଲେ ବି ମନ୍ତ୍ରୀ ବୁଢ଼ାର ସତର୍କ ଆଖିକୁ ଫାଙ୍କି ପାରି ନ ଥିଲା । ତେଣୁ ସେ ଖୁବ୍ ସ୍ୱଚ୍ଛନ୍ଦରେ ଆସି ଗୋଟିଏ ନିକାଞ୍ଚନ ଓ ଆଡ଼ୁଆଳ ଜାଗାରେ ଲୁଚି ରହିଲେ ।

ଗଛ ଉପରେ ବସିଥିବା ସ୍ତ୍ରୀ ଲୋକଟି ସୁଁଶିର ମାରିଲା । ସେହି ସୁଁଶିର ମାରି ଖୁବ୍ ସତର୍କ ଭାବେ ଚମ୍ପାବତୀ ବାରି କବାଟ ଫିଟାଇ ଆସିଲା ଗଛ ପାଖକୁ । ତାକୁ ଦେଖି ଗଛରେ ବସିଥିବା ସ୍ତ୍ରୀ ଲୋକଟି ତଳକୁ ଓହ୍ଲାଇଲା । ଦିହେଁ ଚୁପ୍‌ଚୁପ୍‌ରେ କେତେକ କଥାବାର୍ତ୍ତା ହେଲା ପରେ ହସି ଉଠିଲେ । ସେ ହସରେ ଗୋଟାଏ କିଛି ଉଦ୍ଦେଶ୍ୟ ଥିଲାପରି ଅନୁମାନ କରି ଚତୁର ମନ୍ତ୍ରୀ କୌଶଳରେ

ଯାଇ ସେ ଗଛ ଉପରେ ଚଢ଼ିଗଲେ । ଏ କଥା ଚମ୍ପାବତୀ କିମ୍ବା ଆଗନ୍ତୁକା ସ୍ତ୍ରୀ ଲୋକଟି ମୋଟେ ଜାଣି ପାରିଲେନି ।

କଥାବାର୍ତ୍ତା ଶେଷ କରି ଚମ୍ପାବତୀ ରାଜବାଟୀକି ଗଲେ । ଆଗନ୍ତୁକା ଗଛରେ ଚଢ଼ି କହିଲା—ଉଡ଼ିଚାଲ ଗଛ ।

ଗଛ ଉଡ଼ିଲା । ମନ୍ତ୍ରୀ ଗୋଟାଏ ଡାଳ କୁଣ୍ଢାଇ ବସିଥାନ୍ତି । ବେଳକୁ ବେଳ ଉଡ଼ିବାର ବେଗ ଏତେ ପ୍ରବଳ ହେଲା ଯେ ମନ୍ତ୍ରୀ ଭାବିଲେ, ଡାଳରୁ ହାତ ଖସିଯିବ । ତେଣୁ ବେଳକୁ ବେଳ ଆହୁରି ଜୋରରେ ଜାବୁଡ଼ି ଧରିଲେ । କିଛି ସମୟ ପରେ ଗଛଟି ଯାଇ ଗୋଟିଏ ଚୋଟାରେ ରହିଲା । ତା ଉପରେ ବସିଥିବା ନାରୀମୂର୍ତ୍ତିଟି ଖୁବ୍ ସନ୍ତର୍ପଣରେ ଓହ୍ଲାଇ ଆସି ଚାଲିଲା ବିଳାସପୁର ରାଜବାଟୀ ଆଡ଼େ ।

ମନ୍ତ୍ରୀ ମଧ୍ୟ ଅତି ସତର୍କରେ ତାର ଅନୁସରଣ କଲେ । ରାତି ଅନେକ ହୋଇ ଯାଇଛି । ବଜାର ସହର ଲୋକେ ନିଦ୍ରାଦେବୀଙ୍କ କୋମଳ ଆଲିଙ୍ଗନରେ ବାହାର ଜଗତକୁ ଭୁଲି ଯାଇଛନ୍ତି । ରାଜବାଟୀ ସମ୍ପୂର୍ଣ୍ଣ ନିସ୍ତବ୍ଧ । କୌଣସି କକ୍ଷରେ ଟିକିଏ ଚଢ଼େଇ ପିଲାଟିର ବି ସ୍ୱର ଶବ୍ଦ ଶୁଭୁନି । କେବଳ ଖୋଲିଅଛି ରଜାଙ୍କ ବୈଠକଖାନା ।

ରଜା ଖଣ୍ଡିଏ ଆରାମ ଚେୟାରରେ ଶରୀରରେ ଭାର ଅଡ଼ାଇ ଦେଇ ନିଦ ମେଞ୍ଚା ଆଖିରେ ଅନାଇ ରହିଥିଲା ବାହାର ଆଡ଼େ । ହଠାତ୍ ନାରୀମୂର୍ତ୍ତିକୁ ପ୍ରବେଶ କରିବାର ଦେଖି ଆନନ୍ଦରେ ଅଧୀର ହୋଇ ପଡ଼ିଲେ ।

ନାରୀ ମୂର୍ତ୍ତିଟି ସିଧା ସଳଖ ଯାଇ ଖଣ୍ଡିଏ ଟିଣ ଚୌକିରେ ବସିଲା ।

ରଜା ପଚାରିଲେ—ସବୁ ଭଲତ ରମ୍ଭା !

ରମ୍ଭା କହିଲା, "ସବୁ ଭଲ ମହାରାଜା ! ଚମ୍ପା ମୋର ସବୁ କାମ ଠିକ୍ କରି ଦେଇଛି । ଆଉ କାହାରିକି ଡର ନାହିଁ । ଖାଲି

ସେହି ମନ୍ତ୍ରୀଟା । ଘୋର ଚତୁର ସେ । ରାଇଜ ଗୋଟାକଯାକ ତା କଥାକୁ ଅନାଇ ବସିଛନ୍ତି । ଚମ୍ପା ଯେତେ ଯୋଗାଡ଼ କଲେ ବି ଲୋକଗୁଡ଼ାକ ତା କଥାରୁ ବାହାରୁ ନାହାନ୍ତି । ସେ ବରାବର କରୁଛି ରଜାପୁଅକୁ ମନ୍ତ୍ର ବଳରେ ଯେମିତି ମାଛ କରିଦେଲା, ବୁଢ଼ା ମନ୍ତ୍ରୀଙ୍କି ସେମିତି ଗୋଟାଏ ଡାମରା କାଉ କରି ଉଡ଼ାଇ ଦେବ । ତାପରେ ଖବର ଦେଲାଠୁଁ ଆପଣ ସୈନ୍ୟ ସାମନ୍ତ ନେଇ ସମ୍ବଲପୁର ଦଖଲ କରିବେ ଓ ରାଜା ରାଣୀ ଦିହିଙ୍କି ସମ୍ବଲେଶ୍ୱରୀ ପାଖରେ ବଳି ପକାଇ ଦେବେ । କଥାଶୁଣି ରଜା ଭାରି ଖୁସି ହୋଇଗଲେ । ଟ୍ରେଜେରୀରୁ ନଗଦ ହଜାରେ ଟଙ୍କା ଆଣି କହିଲା —'ନେ' ରମ୍ଭା ! ଏହି ତୋର ଆଜିକାର ପୁରସ୍କାର ।

ଟଙ୍କା ନେଇ ରମ୍ଭା ବିଦା ହୋଇଯିବାରୁ ରଜା ଗଲେ ଶୋଇବାକୁ । ସମ୍ବଲପୁର ମନ୍ତ୍ରୀ ଗୋପନରେ ସବୁ କଥାତକ ଶୁଣି ଧୀରେ ଧୀରେ ବାଟ ଧଇଲେ । ମନଟା ତାଙ୍କର ଗୋଟାଏ ଅଜଣା ଭୟରେ ସିହରି ଉଠୁଥାଏ । ବିଳାସପୁର ରଜା କପଟରେ ସମ୍ବଲପୁର ସର୍ବନାଶ କରିବାପାଇଁ ସେ ଗୋଟାଏ ଷଡ଼ଯନ୍ତ୍ର ଆରମ୍ଭ କରିଛନ୍ତି, ଏକଥା ବୁଝିବାରେ ଆଉ କିଛି ବାକି ରହିଲାନି ।

ଏ ମଧ୍ୟରେ ଦିନେ ଦି' ଦିନ ଗତ ହୋଇ ଯାଇଛି । ମନ୍ତ୍ରୀ ଆସି ନିଜ ଘରେ ପହଞ୍ଚିଛନ୍ତି । ରାଜ୍ୟରେ ବଡ଼ ବଡ଼ କର୍ମଚାରୀମାନଙ୍କୁ ଡକାଇ କେତେ କଣ ମନ୍ତ୍ରଣା ବି କରିଛନ୍ତି । ହେଲେ କୌଣସି କଥା ବାହାରକୁ ବାହାରିନି ।

ହଠାତ୍ ଶୁଣାଗଲା—ମନ୍ତ୍ରୀ ମରିଗଲେ ।

ଚମ୍ପାବତୀ ଖୁସି ହେଲା । ରାଜ୍ୟଲୋକଙ୍କ ଆଖିରୁ ଲୁହ ଗଡ଼ାଇଲେ । ମଣିଷ ମରିଗଲେ ଯେଉଁଭଳି ପ୍ରେତକର୍ମ କରାଯାଏ, ଠିକ୍ ସେହିପରି ସବୁକାମ କରାଗଲା । କୌଣସି କଥାରେ ସନ୍ଦେହ କରିବାକୁ ଫାଙ୍କ ନ ଥିଲା ।

କର୍ମଚାରୀମାନେ ପଚାରିଲେ ଚମ୍ପାବତୀ କି ମନ୍ତ୍ରୀ କିଏ ହେବ ? ଚମ୍ପାବତୀ କହିଲା—ମନ୍ତ୍ରୀ ଦର୍କାର ନାହିଁ । ସବୁ ମନ୍ତ୍ରଣା କାର୍ଯ୍ୟ ମୁଁ ନିଜେ କରିବି ।

ସେନାପତି କହିଲେ—ସେକଥା ମୋଟେ ହୋଇ ପାରିବନି । ଗୋଟାଏ ରାଜ୍ୟର ମନ୍ତ୍ରଣା କାର୍ଯ୍ୟ ଜଣେ ସ୍ତ୍ରୀ ଲୋକ ହାତରେ ଛାଡ଼ି ଦେଇ ରାଜ୍ୟଲୋକେ ନିଶ୍ଚିନ୍ତ ହୋଇ ପାରିବେନି । ଏଣୁ ଗଣତନ୍ତ୍ର ସରକାର ଗଢ଼ାଯାଉ । ଆମ ରାଜ୍ୟ ଆମେ ଶାସନ କରିବା ।

ସେଇଆ କଥା ହେଲା । ରାଜା ରାଣୀଙ୍କୁ ରାଜବାଟୀରୁ ନେଇ ଆଉ ଗୋଟିଏ ନିରାପଦ ସ୍ଥାନରେ ରଖାଇଲେ । ଚମ୍ପାବତୀ କାଳେ କେତେବେଳେ ପଳାଇ ଯିବ କି ଶତ୍ରୁମାନଙ୍କୁ ଆଣି ରାଜବାଟୀରେ ସ୍ଥାନ ଦେଇ ଦେବ, ଏଥିପାଇଁ ଚାରିଆଡ଼େ ଜଗୁଆଳ ରଖାଗଲା । କଥାଟା କ'ଣ, ବାହାରେ କେହି ନ ଜାଣିଲେ ମଧ୍ୟ ଚମ୍ପାବତୀ ମନରେ ହେଲା ଘୋର ସନ୍ଦେହ । ତେଣୁ ସେ ଶୀଘ୍ର ଶୀଘ୍ର ତାର ବାଟଘାଟ ସଫା କରିବାକୁ ଲାଗିଲା ।

ସମ୍ବଲେଶ୍ୱରୀଙ୍କ ମନ୍ଦିର ସାମନାରେ ଜଣେ ନୂତନ ସାଧୁ ଦେଖା ଦେଇଛନ୍ତି । ତାଙ୍କ ଚାରିପାଖରେ ଧୂନି ଜଳୁଛି । ସାଧୁ ବାବା ଆଖି ବୁଜି ଏକଧ୍ୟାନରେ ବସି କରୁଛନ୍ତି ତପସ୍ୟା । ଖରା କାକର ପାଣି ପବନ ପ୍ରତି ଖାତିର ନାହିଁକି, ବାହାର ଦୁନିଆ ପ୍ରତି ଖାତିର ନାହିଁକି, ଦୃଷ୍ଟି ନାହିଁ । ଲୋକମାନେ ଯେତେ ଚେଷ୍ଟା କଲେ ବି ପଦେ କଥା ପାଆନ୍ତି ନାହିଁ । ସେ କେତେବେଳେ ଗାଧୁଅନ୍ତି, କ'ଣ ଖାଆନ୍ତି, କେତେବେଳେ ଶୁଅନ୍ତି ସେ କଥା ସମସ୍ତଙ୍କୁ ଅଜଣା । ହେଲେ ନୂତନ ସାଧୁଙ୍କ କଥା ରାଜ୍ୟରେ ଚହଳ ପଡ଼ିଥାଏ ।

କୁରେଇ ସଙ୍ଗେ ଧର୍ମକୁମାରର ବାହାଘର ସରିଛି । ହେଲେ ଧର୍ମକୁମାରର ମନରେ ଶାନ୍ତି ନାହିଁ । ସେ ସବୁବେଳେ ଇଚ୍ଛାକରେ

ନିଜ ରାଜ୍ୟ ଯାଇ ଦେଖନ୍ତୁ । ସାଧୁ ବାବାଙ୍କ କଥାଟା ସତ କି ମିଛ । ମାତ୍ର ପୁଣି କାହିଁକି ମନଟା ପଛେଇ ଯାଏ । ଯେଉଁ ସ୍ତ୍ରୀ ତାଙ୍କୁ ମନ୍ତ୍ର ବଳରେ ମାଛଟିଏ କରି ପାଣିରେ ଭସାଇ ଦେଲା ସେ ଗୋଟିଏ ରାକ୍ଷସୀ ଛଡ଼ା ଆଉ କଣ ହୋଇପାରେ । ତାପରେ ରାଜ୍ୟଟା ଯେତେ-ବେଳେ ତା ହାତ ମୁଠାରେ ପଡ଼ିଛି, ସେତେବେଳେ ସାଧୁ ବାବାଙ୍କ ବିନା ପରାମର୍ଶରେ ସେଠାକୁ ଯିବା ଉଚିତ ନୁହେଁ । ସବୁବେଳେ ଏହିପରି ନାନା ଭାବନାରେ ବ୍ୟାପୃତ ରହି ମନଟା ତାର ନିରସ ହୋଇପଡ଼େ । ଆଖିରେ ଲୁହ ଜକେଇ ଆସେ । କଥାଟା କୁରେଇ ପାଖରେ ଅଛପା ରହେ ନି । ତେଣୁ ସେ ଦିନେ ଧର୍ମକୁମାର ପାଖରେ ବସି ଖୁବ୍ ବିଶ୍ୱାସରେ ପଚାରିଲା, ତୁମେ କ'ଣ ଚିନ୍ତା କରୁଛ ?

କଥା ଶୁଣି ଧର୍ମକୁମାର କାନ୍ଦି ପକାଇଲା । କିଛି କଥା କହିବା ଆଗରୁ ଦୁଃଖ ଓ କଷ୍ଟରେ ତାର ବାକ୍‌ଶକ୍ତି ରୁଦ୍ଧ ହୋଇ ଆସିଲା । ଏ କଥା ଦେଖି କୁରେଇ ପୁଣି ସାନ୍ତ୍ୱନା ଦେଇ କହିଲା—ଦେଖ, ପିଲା ଛୁଆଙ୍କ ପରି ଅଧିର ହୋଇ ପଡ଼ନା । ଦମ୍ଭ ଧରି ମୋ ଆଗରେ ମନର କଥା ଖୋଲିକରି କହ । ମୁଁ ତୁମ୍ଭର ପତ୍ନୀ, ତୁମ୍ଭେ ମୋର ପତି । ତୁମ୍ଭେ କାୟା ହେଲେ ମୁଁ ଛାୟା । ମୁଁ ପିଣ୍ଡ ହେଲେ ତୁମ୍ଭେ ପ୍ରାଣ । ତୁମ୍ଭର ଯାହା ଦୁଃଖ, ମୋର ବି ତାହା ଦୁଃଖ । ତୁମ ମନରେ ଟିକିଏ ଆଘାତ ଦେଖିଲେ ମୋ ଛାତିରେ ଦାଗ ହୋଇଯାଉଛି । ଏଣୁ ଅନୁରୋଧ କରୁଛି, ମନ କଥାଟା ମୋତେ କହିଦିଅ । ମୁଁ ନିଶ୍ଚେ ଯଥାସାଧ୍ୟ ଚେଷ୍ଟା କରିବି, ତୁମେ ଯେପରି ଶାନ୍ତି ପାଇବ ।

ଧର୍ମକୁମାର ଏଥର ଗୋଟିକଠୁ ସବୁ କଥା କୁରେଇ ଆଗରେ କହିଗଲା ।

ଷୁଣିସାର କୁବେରଇ କହନ୍ତି—କାଲି ସ୍ୱର୍ଗ ଭୂମି ରାଜ୍ୟକୁ ଯିବା । ସେ ବେଶ୍ୟାଝିଅ ଭୂମିକୁ ମାତ୍ର ନଷ୍ଟ କେଇ ପିତୃ ରାଜ୍ୟକୁ ଗ୍ରାସ କରିଛି, ମୁଁ ତାକୁ ଥରେ ଦେଖିବି, ସେ କି ପ୍ରକାର ଯାଦୁ ବିଦ୍ୟା ଜାଣେ ।

କୁମାର କହିଲେ—ତା ବିଦ୍ୟା କଥା ମନେ ପଡ଼ିଗଲେ ମୋ ମୁଣ୍ଡ ଭଉରଟା ଘୁରି ଯାଉଛି କୁବେରଇ ! ସେ ଗୋଟାଏ ରାକ୍ଷସୀ । ତା ଆଗକୁ ଯିବାକୁ ମୋର ମୋଟେ ସାହସ ପାଉନି ।

କୁବେରଇ କହିଲେ—ଭୟ କରନା । ମୁଁ ପାଖରେ ଥିଲେ ସେ ତୁମର ମୋଟେ କିଛି ଅନିଷ୍ଟ କରି ପାରିବନି । ବରଂ ନିଜ କରିଥିବା ଅପରାଧ ଯୋଗେ ଲମ୍ବହୋଇ ପାଦତଳେ ମୁଣ୍ଡ ଲଗାଇବ । ଏହା ଯେବେ ନହେବ, ତେବେ ଆମ ଜାତିର ବିଦ୍ୟା କିଛି ନୁହେଁ ବୋଲି ଜାଣିବ ତୁମେ ।

କୁମାର କହିଲେ—ଅଲେଖ ବାବାଙ୍କ ବିନା ଆଦେଶରେ ମୁଁ ଏଠୁଇଞ୍ଚେ ହେଲେ କୁଆଡ଼କୁ ପାଦ ଉଠାଇବିନି କୁବେରଇ । ମୁଁ ଜାଣେ, ତୁ ଖୁବ୍ ବିଦ୍ୟା ଜାଣୁ । ହେଲେ ଅଲେଖ ବାବା ଆସିଲେ ପରେ ଯାଇ ସୁଁ କଥା ।

ହଠାତ୍ ଅଲେଖ ବାବା ଦେଖା ଦେଇ କହିଲେ—ଭଲ ବେଳେ ପହଞ୍ଚିଛୁ କୁମାର । କୁବେରଇ କଥାରେ ରାଜି ହୋଇ କାଲି ସକାଳୁ ଦୁହେଁ ଯାକ ବାହାରି ଯାଅ । ମୁଁ ଛାଇ ପରି ତୁମ ପଛେ ପଛେ ରହିଛି ।

ବର କନ୍ୟା ଦୁହେଁ ଅଲେଖ ବାବାଙ୍କ ପାଦଧୂଳି ନେଇ ମୁଣ୍ଡରେ ମାରିଲେ । ଧୂମା ପକାଇବା ପାଇଁ ଗୋଟିଏ ଟୁଙ୍ଗୀ କୁଡ଼ିଆରେ ତାଙ୍କୁ ସ୍ଥାନ ଦିଆଗଲା । ଦିନ ଥାଉ ଥାଉ ବାବା ଫଳ-ମୂଳ ବଢ଼ାଇ ଆରମ୍ଭ କଲେ ନିର୍ଗୁଣ ଭଜନ । ଝିଲ୍ଲୀର

ଆବାଳ ବୃଦ୍ଧ ବନିତା ଛୁଟି ଆସିଲେ ନାମ ଭଜନ ଶୁଣିବାକୁ । ନାନା ପ୍ରକାର ବୃନ୍ଦଗଚ୍ଛ । ଫଳ୍ଫୁଲ । ଗୀତ ବୋଲି ଜାଣିଥିବା ଟୋକାମାନେ ବୋଲ୍ ବୋଲି କଲେ । ରାତି ବେଶି ହେଲାରୁ ନାମ ଭଜନ ବନ୍ଦକରି ସମସ୍ତେ ଗଲେ ଶୋଇବାକୁ ।

ପରଦିନ ପ୍ରାତଃରୁ ଅନ୍ଦେଖନାବା ଦର୍ଶନ ଶେଷ କରି ଫଳାହାର ବଢ଼ାଇଲା ପରେ କାଲୁଆ ଓ ଝୁଲିଆଙ୍କୁ ଡାକ କହିଲେ—ମନରେ କିଛି ଦୁଃଖ ନକରି ଝିଅ ଜ୍ୱାଇଁଙ୍କୁ ଖୁସିରେ ବିଦାକର । ସେମାନେ ବୁଲି ଚାଲି କରି ଶୀଘ୍ର ଫେରି ଆସନ୍ତୁ ।

କାଳୁଆ କହିଲା—କିଛି ପରବାଏ ନାହିଁ ମାହାପୁରୁ । ଝାଡ଼ ଜଙ୍ଗଲର ପିଲା ସେ, ଝାଡ଼ ଜଙ୍ଗଲରେ ନ ବୁଲିଲେ ଆଉ ବୁଲିବେ କୁଠି । ଯାନ୍ତୁ, ମନଇଚ୍ଛା ବୁଲି ଚାଲି କରି ଲେଉଟି ଆସିବେ । ମୋର ସେ କଥାରେ ମଞ୍ଜୁର ଅଛି ।

ସାଧୁବାବା ବିଦାୟ ନେଇଯିବା ପରେ କାଲୁଆ ଓ ଝୁଲିଆଙ୍କ-ଠାରୁ ଆଶୀର୍ବାଦ ନେଇ କୁବେରଇ ଓ ଧର୍ମକୁମର ବାହାରିଲେ ସମ୍ବଲପୁର ଆଡ଼େ ।

କୁବେରଇ ପଚାରିଲା—ଉଡ଼ିକରି ଯିବ ନା ବୁଡ଼ିକରି ।

କୁମାର କହିଲା—ବୁଡ଼ିକରି ।

କୁବେର କହିଲା—ନଈ କୂଳକୁ ଆସ ।

ଦିହେଁ ଯାଇ ନଈ କୂଳେ ପହଞ୍ଚିଲେ । କୁବେରଇ ଗୋଟିଏ ଗଛରୁ ପତ୍ରଟିଏ ଆଣି ହାତରେ ଚକଟିଲା । ରସରୁ ଟିକିଏ ନିଜ ମୁଣ୍ଡରେ ଓ ଟିକିଏ ଧର୍ମକୁମାର ମୁଣ୍ଡରେ ମାରି ଦେଇ କହିଲା— ଆସ ।

ଦିହେଁ ପାଣିକି ଡେଇଁ ପଡ଼ିଲେ । ଦେଖୁ ଦେଖୁ ହୋଇଗଲେ ଯୋଡ଼ିଏ ମାଣ୍ଡୁଆ କଙ୍କଡ଼ା । ଗୋଡ଼କୁ ଗୋଡ଼ରେ ଛନ୍ଦି ପାଣି ତଳେ ତଳେ ବୁଡ଼ି ବୁଡ଼ିକା ଉଠିଲେ ଉପର

ଆଡ଼େ । ଶୁଅ କଟେଇ ଉପର ମୁହାଁ ଉଠିବାକୁ କଷ୍ଟ ହେଉଥାଏ, ହେଲେ ସେମାନେ ଦୁଃଖ କଷ୍ଟକୁ ଖାତିର ନ କରି ଏକା ଲକ୍ଷ୍ୟରେ ଚାଲିଥାନ୍ତି ।

ତିନ ଚାରିଦିନ ପରେ ଅଣ୍ଡିରା କଙ୍କଡ଼ା ଥକା ପଡ଼ିବା ଦେଖି ମାଇ କଙ୍କଡା ପଚାରିଲା—କଷ୍ଟ ହେଉଛି କି ।

କହିଲା—ଭାରି କଷ୍ଟ ।

ପଚାରିଲା—ତେବେ କପରି ଯିବା ।

କହିଲା—ଉଡ଼ିକରି ।

ଦୁହେଁ ଉପରକୁ ଉଠିଲେ । ମାଇ କଙ୍କଡ଼ାଟି ଯାଇ ଗୋଟିଏ ଗଛରେ ଚଢ଼ିଲା । ବୁଢ଼ା ଗୋଡ଼ରେ ପତ୍ରଟିଏ ଛିଣ୍ଡାଇ ଆଣି ପହଞ୍ଚିଲା କଙ୍କଡ଼ା ପାଖରେ । କହିଲା ଏ ପତ୍ରରୁ ଟିକିଏ ଖାଇଦିଅ ।

ଦୁହେଁ ଟିକିଏ ଟିକିଏ ପତ୍ର ଖାଇଦେବା ମାତ୍ରେ ହୋଇଗଲେ ଯୋଡ଼ିଏ ଭିଦଭିଦଳିଆ ଚଢ଼େଇ । ମନ ଆନନ୍ଦରେ ଉଡ଼ି ଗାଲିଲେ ଆଗକୁ ଆଗକୁ । ଡେଣା ଝୋଳେଇ ହେଲେ ଗଛ ଡାଳରେ ବିଶ୍ରାମ ନଅନ୍ତି । ମିଠା ମିଠା କୋଳି ପେଟ ପୁରାଇ ଖାଆନ୍ତି—ଆଗକୁ ବଢ଼ନ୍ତି ।

ଆଠଦିନ ପରେ ଯାଇ ସମ୍ବଲପୁରରେ ପହଞ୍ଚିଲେ । ସେତେବେଳକୁ ସମ୍ବଲପୁର କଥା ଅନ୍ୟ ପ୍ରକାର । ଚମ୍ପାବତୀ ରାଜ୍ୟରେ ସର୍ବେସର୍ବା । ବିଧବା ହୋଇ ନାହିଁ କି ତା ମନରେ ଟିକିଏ ହେଲେ ଦୁଃଖ ନାହିଁ । ମନ୍ତ୍ରୀ ମରିଯିବା କଥା ରାଜ୍ୟସାରା ଚହଳ ପଡ଼ିଛି । ଜଣେ ନୂଆ ସାଧୁ ସମ୍ଲେଶ୍ୱରୀ ମନ୍ଦିରରେ ଯଜ୍ଞ କରୁଛନ୍ତି ।

ରଜା ରାଣୀଙ୍କର ପତ୍ତା ନାହିଁ । ରାଜବାଟୀର ଦାସ-ଦାସୀମାନେ ବିକଳ ହୋଇ କାନ୍ଦୁଛନ୍ତି । ଯେତେ ଖୋଜା

ଖୋଜ କଲେ ବ ସତ୍ର ମିଳୁନ । ରାଜ୍ୟରେ ସେନାପତ ସେଥିଯୋଗେ ଖାର ଦୁଃଖିତ । ଉପର ମନରେ ଚମ୍ପାବଣ୍ଣ ମଧ୍ୟ କାନ୍ଦକଟା କରୁଥାଏ ।

ଚତେଇ ଯୋଡକ ବୁଲ ବୁଲ ସବୁ କଥା ଦେଖିଲେ । ଲୋକମାନଙ୍କ କଥାବାର୍ତ୍ତା ବୁଝିଲେ । ତାପରେ ଗଲେ ଗୋଟିଏ ନକାଞ୍ଚନ ଚୋଟାକୁ । ପେଟ ପୁରଇ କୋଳ ଖାଇ କଥା ଆରମ୍ଭ କଲେ ।

ଧର୍ମକୁମାର ପଚ୍ଛରଲ—ସବୁତ ଅଛୁ । ରାଜା ରାଣୀ ଗଲେ କୁଆଡେ ।

କୁରେଇ କହ୍ଲ—ସେବ୍ଭ ରାକ୍ଷସୀ ବେଶ୍ୟା ଝିଅଟା ତାଙ୍କୁ ମାର ପକାଇଲ କ କଣ ।

ଧର୍ମକୁମାର କହ୍ଲ—ମାର ନ ଥିବ । ବଳାସପୁର ରଜାଙ୍କ ପରାମର୍ଶରେ ପଠ ଇଥିବ ତାଙ୍କ ବନ୍ଦୀ ଘରକୁ । ନଚେତ୍ ମୋଣ୍ଟ ଭଳଆ ମନ୍ତ୍ର ବଳରେ ସାପ କ ବେଙ୍ଗ କର ଦେଇଥିବ ।

କୁରେଇ—ତା'ଠୁ କଥା ନ ଆଣିଲେ ଜାଣିବା କପର ?

ଧର୍ମକୁମାର—କଥା ଆଣିବାକୁ ଉପାୟ କଣ ?

କୁରେଇ—ଉପାୟ ଅଛୁ । ମୁଁ ଯେ କୌଣସି କୌଶଳରେ ତା ପାଖରୁ କଥା ଆଣିବ । ତୁମ୍ଭେ ମୋତେ ଅଣ୍ଟିର ଦୁଅନା । କହୁ କହୁ ଗୋଟିଏ ବୁଢ଼ୀରୂପ ଧର ଠିଆହେଲା ।

ଧର୍ମକୁମାର ପଚ୍ଛରଲ—ଏ କଣ ।

କହ୍ଲ—ମୁଁ ବାହାରଲ ଭଡରଆ କଥା ଆଦାୟ କରବାପାଇଁ । ତୁମେ ଏ ଚୋଟା ଛୁଡ଼ କୁଆଡ଼େ ଯିବନ ।

ଧର୍ମକୁମାର କହ୍ଲ—ହଉ, ତୋ ଇଚ୍ଛା ଯାହା ତାହା କର । ମୁ କେବଳ କଥା ମାନ ଏଇଠି ବସିଛୁ ।

କୁବେରଇ ଛଦ୍ମ ବେଶରେ ଯାଇ ପହଞ୍ଚିଲା ରାଜାଙ୍କ, ସିଂହ ଦୁଆରେ । ଭିକାରୁଣୀ ବେଶ ॥ ମୁଣ୍ଡରେ ଜମା ବନ୍ଧ ଜଟା । ।ହାତରେ ଭିକ୍ଷା ଥାଳ, ମୁହଁରେ ଧରିଛି ଗୀତ ଖଣ୍ଡେ—

ଧରମ ଦାତା ଧରମ କର
ହୀନ କରମା ମୁହିଁ
ଭରମି ମରେ ଧରମ ଡାଣ୍ଡେ
ମରମ ଢଏ ଦୁହିଁ ।
ନାହିଁ ମୋ ଜାତି ନାହିଁ ଅଜାତି
ନରାଣ ଛାତି ଜଳାଏ ସ୍ମୃତି
ଭିକ ମୁଠିଏ ସଙ୍ଗେ ଭରସା
ଗଛ ତଳର ଭୂଇଁ ।୧ ।

ସ୍ୱରଟି ଖୁବ୍ ମଧୁର । ଭିକ ମାଗି ଗୀତଟି ଗାଇ ବୁଢ଼ୀ ବୁଲୁଛି ଦାଣ୍ଡେ ଦାଣ୍ଡେ । କେତେ ଛୁଆ ପିଲା ତା ପଛରେ ଗୋଡ଼ାଇ-ଛନ୍ତି ଗୀତ ଶୁଣିବାକୁ । କେହି କେହି ଦୟାଶୀଳ ଲୋକ ପଇସାଏ ଅଧଲାଏ ମଧ୍ୟ ଯାଚି କରି ଦେଉଥାନ୍ତି । କେହି ତା ଦୁଃଖରେ ଆହା କରୁଥାଏ । କେହି କେହି ତାକୁ ସମବେଦନା ଜଣାଇ କେତେ ଦୁଃଖ ସୁଖ ଜଣାଉ ଥାଆନ୍ତି । ହେଲେ ସେ କୌଣସି କଥାକୁ କାନ ନ ଦେଇ ବୁଲୁଥାଏ ଏକ ଲକ୍ଷ୍ୟରେ । ଧ୍ୟାନ ତାର ରାଜବାଟୀ-ଚମ୍ପାବତୀ ରାଜ-ରାଣୀ ।

ପହଞ୍ଚିଗଲେ ରାଜ ବାଟୀର ସିଂହ ଦ୍ୱାର । ପ୍ରହରୀ ଦଣ୍ଡା ଯମଦୂତ ଭଳି ଠିଆ ହୋଇଛନ୍ତି । ବୁଢ଼ୀକି ଦେଖି ଲାଲ ଆଖି ଦେଖାଇବାକୁ ଆରମ୍ଭ କଲେ । ଗୀତ ଗାଇବାକୁ ମନା ବି କଲେ ।

ବୁଢ଼ୀ କହିଲା—ହେ ବାପା, ମୁଠାଏ ଭିକପାଇଁ ଆସିଛି । ଟିକିଏ ବୋହୂ ସାଆନ୍ତାଣୀଙ୍କି ଦେଖା କରି ବୁଲିଯିବି ।

ତୁମେ ମୋତେ ନାଲି ଆଖି ଦେଖାଉଛ କାହିଁକି ?

ବୋହୂ ସାଆନ୍ତାଣିଙ୍କ ଦେଖା କଥା ଶୁଣି ପ୍ରହରୀ ଯେ ଡ଼ାକ ଦହଗଲେ । ଭିତରକୁ ଖବର ଗଲା । ବୁଢ଼ୀ ସେଇଠି ଠିଆ ହୋଇ-ଥାଏ । ଆସିଲା ଚମ୍ପାକଳି ।

ପଚ୍ଚରିଲା—କୋଉଠୁ ଆସିଛ ?

କହିଲେ—ବଳାସ ପୁରରୁ ।

ଏତକ ଶୁଣି ଚମ୍ପାକଳି ଆଉ କଛି ନ କହି ସଙ୍ଗରେ ଡାକ ନେଲା ଭିତରକୁ । ଭଲ ଭଲ ଜନଷ ଖାଇବାକୁ ଦେଲା । ଖଣ୍ଡେ ନୂଆ ଲୁଗା ପିନ୍ଧାଇଲା । ତାପରେ କହିଲା—ଯା, ରଜାଙ୍କୁ କହିବୁ, ସବୁ କାମ ସରିଛି । ମନ୍ତ୍ରୀ ମନ୍ତ୍ରିଣୀ । ରଜା ରାଣୀ ଦହେଁ ଯୋଡ଼ିଏ ବଳେଇ ହୋଇ ନଗରଯାକ ବୁଲୁଛନ୍ତି । ବାକି ଗୋଟାଏ ମାତ୍ର ସେନାପତି । ତାକୁ ଆଜ ରାତି ମଧ୍ୟରେ ପାରିଟିଏ କରି ଉଡ଼ାଇ ଦେବ । କାଲିକି ଆଉ କଛି ବଳାଇବନ । ଏଥର ସେ ଅବାଧରେ ସୈନ୍ୟସାମନ୍ତ ଆଣି ରାଜ୍ୟଟା ଦଖଲ କରି ନଅନ୍ତୁ ।

ବୁଢ଼ୀ ଆଉ କଛି ଶୁଣିବାକୁ ଇଚ୍ଛା କଲାନ । ମିଠା ମିଠା କଥାରେ ଚମ୍ପାକଳୀକ ବୋଧ ଶୋଧ କରି ତଅଁକ ବାହାରିଗଲା ! ମନ ହେଲା ସେନାପତିଙ୍କୁ ଦେଖା କରିବାକୁ । ତେଣୁ ସେ ବାଟ ପଚ୍ଚରି ଗଲା ତାଙ୍କ ଘରକୁ । ଦେଖା କଲା । ନଜେ ଘରି ଗଣିକ ବୋଲ ଜହି ଭକ ମାଗିଲା । ତାପରେ କହିଲା—ପ୍ରଭୁଙ୍କର ହୁକୁମ ହୋଇଛି । କାଲି ମଧ୍ୟରେ ତୁମକୁ ଘୋର ବପଦ ଆସିବ । ତେଣୁ ମୁଁ ଆସିଛି ଗୋଟିଏ ଉପାୟ ବତାଇବାକୁ ।

ପଚ୍ଚରିଲେ—କ ଉପାୟ ?

କହିଲା—ଉପାୟଟା କଛି ନୁହେଁ । କେବଳ ମାତ୍ର ଗୋଟିଏ ଗଛର ପତ୍ର ଦେବ । ତାକୁ ତୁମେ ଖାଇ ସାତଥର ମୁଣ୍ଡ ଧୋଇ ଗାଧୋଇ ପଡ଼ିବ । ତା ନହେଲେ ବଡ଼ ଦୁଃଖରେ ପଡ଼ିବ ବାବୁ ।

ସେନାପତି ବୁଢ଼ୀ କଥାଟାକୁ ଅଥବା ହସରେ ଉଡ଼ାଇ ଦେଇ ଆନ୍ତା; ମାତ୍ର ଏ କେତେମାସ ହେଲା ରାଜ୍ୟରେ ଯେପରି ଉତ୍ପାତ ସବୁ ଦେଖାଯାଉଛି, ସେଥିପାଇଁ ମାରକ ହେଲେ। ଅବଶେଷରେ ବୁଢ଼ୀ କଥାମାନ୍ତ ପଇତି ଖାଇ ସାତଅର ମୁଣ୍ଡ ବୁଡ଼ାଇ ଗାଧୋଇ ପଡ଼ିଲେ। ଏଥର ବୁଢ଼ୀ ବିଦାୟ ନେଇ ଚାଲିଗଲା।

ଧର୍ମକୁମାର ଭଦଭଦଳିଆ ରୂପରେ ବସିଛି। ଏମିତିବେଳେ ଆସିଲା ଗୋଟାଏ ବଡ଼ ଡାମଣା ସାପ। ଚଟଚ ଚଢ଼େଇଟି ଜାଣି ପାରିଲାନି। ଏକ ଲକ୍ଷ୍ୟରେ କୁରେଇ ବାଟକୁ ଅନାଇ ବସି ରହିଲା। ତା ଅଲକ୍ଷରେ ସାପଟା ଆସି ଟକ୍ କରି ଧରି ପକାଇଲା ତାକୁ। ବିଚରା କେଁ କେଁ ହୋଇ ଯେତେ ଛଟପଟ ହେଲେ ବି ମୋଟେ ଛାଡ଼ିଲାନି। ଦେଖୁ ଦେଖୁ ପୁରାପୁରି ତାକୁ ଗିଳିଦେଇ କୋରଡ଼ରେ ପଶିଲା।

କୁରେଇ ଖୋଜି ଖୋଜି ନାସ୍ତାନ୍ତ ହେଲାଣି। ତେବେ ବି ତା ସ୍ୱାମୀର ସନ୍ଧାନ ପାଉନି। ଏଣୁ ଆଖିରୁ ଲୁହ ବୋହୁଛି ଯେତିକି ପ୍ରାଣରୁ କୋହ ଉଠୁଛି ବି ସେତିକି। କଣ କରିବ, ବିଚରି କାନ୍ଦି କାନ୍ଦି ପୁଣି ଧରିଲା ଭଦଭଦଳିଆ ରୂପ। ବଣ ପର୍ବତ ଆଦି ସବୁ ଖୋଜି ବୁଲିଲା। ପବେ ପବେ ଶିରେ ଶିରେ ଖୋଜୁ ଖୋଜୁ ଦେଖିଲା ଆମ୍ବଗଛ କୋରଡ଼ରେ ଡମଣା ଶୋଇଛି। ପାଖରେ ପଡ଼ିଛି ତାର ବି' ବ୍ରତଟା ଭଦଭଦଳିଆ ପକ୍ଷୀ। ତେଣୁ ସବୁ କଥା ତାକୁ ଜଣା ପଡ଼ିଗଲା। ନିଶ୍ଚେ ଏହି ସାପ ସ୍ୱାମୀକୁ ତାର ଖାଇଛି। ତା ନହେଲେ ଯାଆନ୍ତା କୁଆଡ଼େ।

କୁରେଇ ତ ଅନେକ ପ୍ରକାର ବିଦ୍ୟା ଜାଣେ। ତା ମଧ୍ୟରେ ଗୋଟିଏ ବିଦ୍ୟାର ନାମ—ମୃତ୍ୟୁଂଚେତନ ବିଦ୍ୟା। ସେ ବିଦ୍ୟାବଳରେ ମରିଥିବା ପ୍ରାଣୀର ଆତ୍ମା କେଉଁଠି ଥିବ ନିଶ୍ଚେ

ଯବାବ ଦେବ । କୁବେରଇ, ବର୍ତ୍ତମାନ ସେହି ବିଦ୍ୟା ସାହାଯ୍ୟରେ ଧର୍ମକୁମାରଠାରୁ ଯବାବ ଚାହିଁଲେ ।

ସାପ ପେଟରେ ଥାଇ ଧର୍ମକୁମାର କହିଲେ—ମୋତେ ଏହି ଡମଣା ଗିଳିଛି । କୁବେରଇର ମୁଣ୍ଡ ବୁଲେଇ ଦେଲା । ଜ'ଣ କରିବ ନ କରିବ ସେ କଥା ଭାବିବାକୁ ସମୟ ପାଇଲେନି । ହଠାତ୍ ଗୋଟାଏ ମୟୂରୀ ରୂପ ଧରି କୋରଡ଼ରୁ ଆସେ ସାପଟାକୁ ଓଟାରି ଆଣି ପକାଇ ଦେଲା ତଳେ । ଅଣ୍ଟ ମାଣ୍ଟି ପେଟ ଚିରିବା ପାଇଁ ବରାଦ କଲା ମାତ୍ରେ ସେ ଘୋର ରଡ଼ି କରି ପାଡ଼ିଟି ଗଲା ଗୋଟାଏ ଅସୁର । ଶାଳ ଗଛ ପରି ହାତ, ତାଳଗଛ ପରି ଗୋଡ଼ । କାନ ଯୋଡ଼ିକ ହାତୀ କାନ ପରି । ଆଖିରେ ଦ୍'ଢ ଗୌଣୀ ଚାଉଳ ପଶିବ । ନିଃଶ୍ୱାସ ପବନ ଶୁଭୁଥାଏ ଶଙ୍ଖ ବଜାଇଲା ପରି । ଦାନ୍ତ ଗୁଡ଼ାକ ଲଙ୍ଗଳ ଲୁହା ଅପେକ୍ଷା ଅଧିକ ବଡ଼ ଓ ମୁନିଆ । ଗୋଟିଏ ହାତରେ ଗଦା ଅନ୍ୟ ହାତରେ ମୁଦ୍‌ଗର । ରଡ଼ି କରି ଝଣ୍ଡ ମଣ୍ଡଳ କମ୍ପମାନ କରିବାକୁ ଲାଗିଲା । ମୟୂରୀ ଉପରେ ଉଡ଼ୁଥାଏ ।

ଅସୁର ହାତ ବଢ଼ାଇଲା ତାକୁ । ମୟୂରୀ ଡରିଲେନି, ଖୁବ୍ ସହଜ ସହଜ ଭାବରେ ଧରାଦେଲା । ଗିଳିଦେବା ପାଇଁ ବରାଦ କରୁ କରୁ ଚଞ୍ଚୁରେ ମୟୂରୀ ଅଣ୍ଟ ସାହାଯ୍ୟରେ ତା ଆଖି ଯୋଡ଼ାକ ଖୋଳି ତଳେ ପକାଇ ଦେଲା ।

ଅସୁର ବେଦନାରେ ଛଟ ପଟ ହୋଇ ଘୋର ରଡ଼ି କରୁ କରୁ ମୟୂରୀଟାକୁ ମଧ୍ୟ ହାତରୁ ଛାଡ଼ି ଦେଲା । ନିଜେ ଲକ୍ଷ୍ୟ କରି ତଳେ ବସି ପଡ଼ିଲା । ଆଖି ଭିତରୁ ରକ୍ତର ଧାର ଛୁଟୁଥାଏ । ଏହି ଅବସରରେ ମୟୂରୀ ଆସି ତା ତାଳୁ ଉପରେ ଲଗାଇ ଦେଲା ଆଉ ଗୋଟିଏ ଚୋଟ । ମୁଣ୍ଡ ଉପରେ ରକ୍ତ ପିଚକା ଉଠିଲା । ଏଥର ଅସୁର ରାଗରେ ଅସମ୍ଭାଳ ହୋଇ ଉପାଡ଼ିଲା ଗୋଟାଏ ଶାଳଗଛ ।

ଅନ୍ଧାରୁଆ କରି ଖୁବ୍ ଯୋରରେ ବୁଲାଇ ବଡାଇ ଜଳ ମୟୂଖରାକୁ ପିଟି ମାରି ଦେବାପାଇଁ ।

ମୟୂଖ ହେଉଛେକେଳକୁ ହୋଇଯାଇଛୁ ଗୋଟାଏ ଗଣ୍ଡ ଭୈରବ ଚଢ଼େଇ । ଦେଖିବାକୁ ଗୋଟିଏ ଝଣ୍ଡିଆ ପାହାଡ଼ ପରି । କାଉଁ କାଉଁ ରଡ଼ି ଛୁଡ଼ନ୍ତ ବେଳକୁ ଖଣ୍ଡ ମଣ୍ଡଳ କମ୍ପମାନ ହେଉଥାଏ । ଏଣେ ଅସୁର ରଡ଼ି, ତେଣେ ଗଣ୍ଡଭୈରବ ଚଢ଼େଇ ଗର୍ଜନ । ବଣ ଖଣ୍ଡିକରେ ପ୍ରଳୟ ସୃଷ୍ଟି କରୁଥାଏ । ଭାରି ଯୋର ଲଢ଼ାଇ ଆରମ୍ଭ ହେଲା । ଚଢ଼େଇ ତା କଳ କୌଶଳରେ ଅସୁର ନାକଟାକୁ ତା ଥଣ୍ଟରେ ଏପରି ଭାବେ କାମୁଡ଼ି ଧରିଲା ଯେ, ବଡାଭାଇ ନିଃଶ୍ୱାସ ଚଳିଲା ନାହିଁ । କଷ୍ଟରେ ଛଟ ପଟ ହୋଇ ଖାଲି ଡାକ ପକାଇଲା—ନାକ ଛାଡ଼ ।

ଚଢ଼େଇ କହିଲା—ନାକ ଯେବେ ଛାଡ଼ିବ ତେବେ ମୋ ବରକୁ କାଢ଼ ।

ଅସୁର କହିଲା—ତୋ ବର ମୋ ପେଟରେ ।
ଚଢ଼େଇ କହିଲା—ତୋ ନାକ ମୋ ଥଣ୍ଟରେ ।
ଅସୁର କହିଲା—ବରକୁ କାଢ଼ିବି ।
ଚଢ଼େଇ କହିଲା—ନାକକୁ ଛାଡ଼ିବ ।

ଏମିତି କଥା ବାର୍ତ୍ତା ହୋଇ ଅସୁର ବାନ୍ତି କଲା ଗୋଟିଏ ମଲା ଭଦଭଦଳିଆ ଚଢ଼େଇ । ଗଣ୍ଡଭୈରବ ତା ନାକ ଛାଡ଼ି ଦେଇ କହିଲା—ବଞ୍ଚାଇ ଦେ । ତା ନହେଲେ ତୋ ପେଟ ଚିରି ଦେବି । ଏହା କହି ଅନ୍ତଲ ପେଟରେ ଟିକଏ ଥଣ୍ଟ ମାରି ଦେଲା ।

ଅସୁର କହିଲା—ଥାଉ ଥାଉ, ମୁଁ ନିୟମ କରି କହୁଛି, ସାତଦିନ ଭିତରେ ତୋ ବର ନିଶ୍ଚେ ବଞ୍ଚିବ । ତୁ ତାକୁ ନେଇ ଯା, ଗୋଡ଼ା ପର୍ବତ ତଳକୁ । ସେଠି ଯୋଉ ବୋଡ଼ା-ବାକାଣୀ ଅଛୁ

ତାର ଗୋଡ଼ ତଳେ ପକାଇ ଦେଇ ଖୁବ୍ ଯୋରରେ କାନ୍ଦିବୁ । ସେତିକିରେ ଯେବେ ତା ଧ୍ୟାନ ନ ଭାଙ୍ଗେ, ତେବେ ସେଇଠି ଥାଇ ଡାକିବୁ—

କଣା ଅସୁର ଆ ଝଟ
କାମୁଡ଼ ଖାଆ ରଟ ମଟ

ପକ୍ଷୀରାଜ—ତା ପରେ କ'ଣ ହେବ ?

କହିଲା—ମୁଁ ଯାଇ ତୋ ପାଖରେ ପହଞ୍ଚିବ । ଦ୍ୱୋଡ଼ା ବାବାଜୀଙ୍କ ଦେବ ଏଭଳି ଘୁଷି ଯେ, ସେ ଡର ମର ତୋ ବରକୁ ଫେରାଇ ଦେବ ।

ଏ କଥା ଶୁଣି ଗଣ୍ଡଭୈରବ ଚଢ଼େଇଟି ମନ୍ଦ ଭଦରଦଳଆଟି ଅଣ୍ଟରେ ଧର ବୁଲିଲା ଗୋଡା ପର୍ବତ ପାଖକୁ ।

ଅସୁର କହିଲା— ଶୁଣ୍ ଶୁଣ୍ । ମନ୍ଦ ଚଢ଼େଇଟା ପେଟରୁ ବାହାରୁଛି । ତାକୁ ଧୁଆ ଧୋଇ କରିଆଣ । ମୁଁ ଗୋଟାଏ ଗଛ କ୍ଷୀର ମଡ଼ାଇ ଦିଏ । ତା ନ ହେଲେ ସାତଦିନ ଯାଏ ସେ ଉଡ଼ିବ ନାହିଁ, ସଡ଼ି ମିଳାଇ ଯିବ ।

ଗଣ୍ଡଭୈରବ ତା କଥା ମାନ ଧୋଇ ଧାଇ ଆଣିଲା ପରେ ଅସୁର ଗୋଟିଏ ଗଛ ମୂଳକୁ ଯାଇ କଞ୍ଚା କ୍ଷୀର ଆଣି ମଡ଼ାଇଦେଲା, ତାପରେ କହିଲା—ଏକମୁହାଁ ହୋଇ ବୁଲିଯା ।

ଗଣ୍ଡଭୈରବ ଆଉ ଅନ୍ୟ କୁଆଡେ ଲକ୍ଷ୍ୟ ନଦେଇ ଏକ ମୁହାଁ ହୋଇ ବୁଲିଲା ଗୋଡା ପାହାଡ଼ ଖୋଜ ଖୋଜକା ।

ଚାରିଆଡ଼େ ମାନ ମାନ ପର୍ବତ ଆକାଶକୁ ଲଗି ଠିଆ ହୋଇଛି । କେତେ ଜାତିର ବୃକ୍ଷ ଲତା ନଜ ନଜର ଶ୍ୟାମଳକା ବିତରଣ କରି ତାର ଶୋଭାକୁ ଦୁଇଗୁଣ ବଢ଼ାଇ ଅଛନ୍ତି । ସବା ଶେଷ ମୁଣ୍ଡ ପର୍ବତ ଚୂଳ ଉପରୁ ତଳ ଆଡ଼କୁ ଓହଳ ଆସିଛି ଗୋଟାଏ ଗୋଟାଏ ପ୍ରକାଣ୍ଡ ପଥର । ଦେଖିବାକୁ ମଣିଷର ଗୋଡ଼ ପରି ।

ମାଟିରେ ଲାଗିବାପାଇଁ ଢଣହାତଟି ଅଛି ତାର ନାହିଁ । ବୋଡ଼ା ବାବାଜୀଙ୍କ ତପସ୍ୟା ପୀଠ ନାହିଁ ତଳେ ।

ଧୂଳି ଜଳୁଛି । ବାବାଜୀ ଆଖି ବୁଜି ଧ୍ୟାନରେ ବସିଛନ୍ତି । ସେ ଧ୍ୟାନ ଭାଙ୍ଗିବା ଧ୍ୟାନ ନୁହେଁ । ଦେଖିବା ମଣିଷ ତାକୁ ଦେଖି କାବା ହୋଇ ଯିବାର କଥା । ବାବାଜୀ ଜଣକ ସାପ କି ମଣିଷ ଏକଥା କେହି ଠିକ୍ କରିବା କଷ୍ଟ । କାରଣ, ଗୋଟିଏ ବୁଲଣ ହାତ ଲମ୍ବର ବୋଡ଼ା ସାପ ଚକା ମାରି ଶୋଇଛି । ମୁଣ୍ଡ ତାର କେଉଁଠି ଅଛି କି ନ ଅଛି, ସେ କଥା ଜାଣିବାର ଉପାୟ ନାହିଁ ।

ବାବାଜୀ ମଧ୍ୟ ସେହିପରି । ତାଙ୍କର ଗୋଡ ହାତ କି ଗଣ୍ଡି କିଛି ଦେଖାଯାଉନ । କେବଳ ବେକଠୁଁ ମୁଣ୍ଡଟି ଥାଏ ବୋଡ଼ା ସାପ ଚକାଉପରେ । ସେ ମୁହଁରେ କଳା ନିଶଦାଢ଼ୀ । ଯିଏ ଦେଖିବ ସେ କହିବ ସାପ ଦେହ ମଣିଷ ମୁଣ୍ଡ ।

ଏହିପରି ଗୋଟିଏ ଅଦ୍ଭୁତ ବାବାଜୀଙ୍କ ନିକଟରେ ପହଞ୍ଚି କୁରେଇ ଆପଣା ରୂପରେ ଠିଆହୋଇ ଭକ୍ତି ଭାବରେ ପ୍ରଣାମ କଲା ଓ ପାଦ-ତଳେ ମଳ୍ଲି ଉଦଉଦଳଟିକି ପକାଇଦେଇ ଭୋ କରି କାନ୍ଦିଉଠିଲା । ସେ କାନ୍ଦରେ ବଣ ପର୍ବତ ମୁଖରିତ ହୋଇ ଉଠିଲା ପଛକେ ବାବାଜୀଙ୍କ ଧ୍ୟାନ ଟଳିଲାନି କି ଆଖି ଫିଟାଇ ତଳେମାଡ଼ ଅନାଇଲେନି ।

ବେଳକୁ ବେଳ କୁରେଇ ବହୁତ ବିକଳ ହୋଇ କାନ୍ଦିଲା, ଧୂଳିରେ ଗଡ଼ି ମୁଣ୍ଡ ବାଡ଼େଇଲା, ତେବେ ସୁଦ୍ଧା କିଛି ହେଲାନି । ପାଞ୍ଚ ପାଞ୍ଚଦିନ କାଳ କାନ୍ଦି କାନ୍ଦି ବାବାଜୀ ନ ଶୁଣିବାରୁ କୁରେଇ ଥରେ ଧର୍ମ ଦେବତାଙ୍କୁ ନମସ୍କାର କରି ଅସୁର ସତ୍ୟ ବାଡ଼ିବାପାଇଁ କହିଲା—

କଣା ଅସୁର୍ ଆ ଝଅଟ
କାମୁଡ଼ି ଖାଆ ରଅଟ ମଟ ।

ଅଳ୍ପ ସମୟ ପରେ ଉପରୁ ଶୁଭିଲା ସାଇଁ ସାଇଁ ଗର୍ଜନ । କଳା କଜଳ ଭଳିଆ ଉଡ଼ି ଆସିଲା ସେହି ଅସୁରଟା । ତଳେ ପହଞ୍ଚିବା ମାତ୍ରେ ହସିଲା ଗୋଟା ବିକଟାଳ ହସ ।

କି ଭୀଷଣ ସେ ହସ ତା'ର । ଠିକ୍ ଗୋଟିଏ ପ୍ରଳୟଙ୍କରୀ ଝଡ଼ ଭଳି ସେ ହସର ବେଗରେ ଗଛ ଲତାଗୁଡ଼ାକ ଥରିଉଠିଲା । ତଥାପି ବୋଡ଼ା ବାବାଜୀଙ୍କ ଧ୍ୟାନ ଭଙ୍ଗିଲାନି ।

କଣା ଅସୁର ରାଗରେ ପାଚିଗଲା । ବାଁ ହାତ ବଢ଼ାଇ ସାପ ଲାଙ୍ଗୁଡ଼ଟାକୁ ଟାଣିଦେଲା ମାତ୍ରେ ବାବାଜୀ ଆଖି ଖୋଲି ଅନାଇ ଦେଲେ । ସେ ଆଖିରେ କ'ଣ ଥିଲା କେଜାଣି, ଦେଖୁ ଦେଖୁ ମଲା ଗଛ ଗୁଡ଼ାକ କଅଁଳି ଉଠିଲା । ମଲା ଭିଦଭିଦଳିଆଟା ବଞ୍ଚି ଆରମ୍ଭ କରି ଦେଲା ଚରିବାକୁ । ଅସୁରର ଆଖି ବି'ଟା ବି କଅଁଳି ଗଲା । ସମସ୍ତେ ସମସ୍ତଙ୍କୁ ଦେଖିପାରିଲେ । ମନ୍ତ୍ରବଳରେ କୁରେଇ ଧର୍ମ-କୁମାରକୁ ତା ହାତରୁ ପରେ ଠିଆ କରାଇଦେଲା । ସକଳ କଥା ପଚାଇ ବିଚାରେ ବହୁତ କାନ୍ଦିଲେ । ଅସୁର ଆଗରେ ଜୀବନର ଦୁଃଖଯାକ କହିବାରୁ ଶୁଣିକରି ସେ ଘରି ଦୁଃଖିତ ହେଲା ଓ ସେମାନଙ୍କୁ କହିଲା— ତୁମେ ଯାଇ ପ୍ରାଣପଣେ ଚେଷ୍ଟାକର । ଯଦି କେତେବେଳେ ବିପଦ ପଡ଼େ ତେବେ ମୋତେ ସ୍ମରଣ କଲେ ମୁଁ ଯାଇ ପହଞ୍ଚିବି । ଧର୍ମରେ ଆଜଠୁଁ ତୁମେ ବିଚାରେ ହେଲ ମୋର ପୁଅ ବୋହୂ ।

ବାବାଜୀ ସେତେବେଳକୁ ଆଖିବୁଜି ଧ୍ୟାନମଗ୍ନ ହୋଇସାରି-ଥିଲେ । ତାଙ୍କ ସଙ୍ଗେ କଥାବାର୍ତ୍ତା ହେବାପାଇଁ ଆଉ ସୁବିଧା ନ ଥିବାରୁ ଯିଏ ଯୁଆଡ଼େ ବାଟଧରି ଆଗେଇଗଲେ ।

ସମ୍ବଲେଶ୍ବରୀ ମନ୍ଦିର ଆଗରେ ଯୁ ସାଧୁ ଜଣକ ତପସ୍ୟା କରୁଥିଲେ ତାଙ୍କୁ ଆଜ ହୁକୁମ ମିଳୁଛି ।

ରାତ୍ରଅର୍ଦ୍ଧ ସମୟରେ ସ୍ୱୟଂ ଦେବୀ ଦର୍ଶନ ଦେଇ କହୁଛନ୍ତି—ତୁମେ ରାଜବାଟୀ ଉପରେ ଖାଷ୍ ଦୃଷ୍ଟି ରଖ । ଆଜଠୁଁ ଘରଭିତର ମଧ୍ୟରେ ଶତ୍ରୁ ଆସିବ ତାର ବିଜୟ ନିଶାଣ ଉଡ଼ାଇବା ପାଇଁ । ବେଶ୍ୟାଝିଅ ସବୁ ପ୍ରକାର ବାଟ ଘାଟ ପ୍ରସ୍ତୁତ କରି ସାରିଛି । ରାଜା-ରାଣୀ ଭଡ଼େ ବନ୍ଦୀ ହୋଇ ବୁଲୁଛନ୍ତି ନଗରଯାକ । ତୁମେ ନିଜେ ପରଲୋକ ହୋଇ ଯାଇଛ ବୋଲି ସମସ୍ତେ ଜାଣନ୍ତି । ତେଣୁ ଏକ ପ୍ରକାର ଭଲ ହୋଇଛି ।

ସେନାପତିଙ୍କ କାମ ବି ଆଜ କଟି ଯାଇଥାନ୍ତା । କେବଳ ଅଲେଖ ନିରଞ୍ଜନଙ୍କ ଦୟାରୁ ବଞ୍ଚିଗଲେ ସେ । ବେଶ୍ୟାଝିଅ ଆଉ ଯେତେ ଚେଷ୍ଟା କଲେ ବି ତାଙ୍କର କିଛି କରି ପାରିବନି । ଏଣିକି ତୁମେ ନିଶ୍ଚିନ୍ତ ହୁଅ । ପ୍ରଭୁ ଅଲେଖ ନିରଞ୍ଜନଙ୍କ କୃପା ଦୃଷ୍ଟି ରାଜବଂଶ ଉପରେ ପଡ଼ିଛି । ସେ ମଧ୍ୟ ନିଜେ ରାଜପୁତ୍ରଙ୍କୁ ସହାୟ ହୋଇ ବଞ୍ଚାଇ ଦେଇଛନ୍ତି ।

ମନ୍ତ୍ରୀ ଚମକି ପଡ଼ି ପଚାରିଲେ ରାଜପୁତ୍ର ବଞ୍ଚିଛନ୍ତି ?

ଦେବୀ କହିଲେ ଗୁପ୍ତ ବେଶରେ ସେ ଓ ତା ନୂତନ ବିବାହିତା ଯାଦୁକ ରାଣୀ ପତ୍ନୀ ଆସି ରାଜ୍ୟରେ ପହଞ୍ଚି ସାରିଲେଣି । ପତ୍ନୀ ତାର ଅସ୍ପୃଶ୍ୟ ହେଲେ ବି ଖୁବ୍ ବୁଦ୍ଧିମନ୍ତ । କପଟ ବେଶରେ ସବୁ ଷଡ଼ଯନ୍ତ୍ରର ପତ୍ତା ନେଉଛି ସେ । ଆଉ କିଛି ଭୟ ନାହିଁ ।

ଦେବୀ ଅନ୍ତର୍ଦ୍ଧାନ ହେଲେ । ଯଜ୍ଞ କାମ ବନ୍ଦକରି ମନ୍ତ୍ରୀ ସଜାଇଲେ ଗୋଟିଏ ନକୁଆ କେଳା ବେଶ । ରାଜଗଡର ଚାରିପାଖ ବୁଲି ଚଡେଇ ମାରିବା ବାହାନାରେ ସତର୍କ ଦୃଷ୍ଟି ରଖିଲେ ଶତ୍ରୁର ଷଡ଼ଯନ୍ତ୍ର ପ୍ରତି ।

ରାତି ଅଧରୁ ଗଡ଼ିଲାଣି । ବିଳାସପୁର ଆଡୁ ପୂର୍ବୋକ୍ତ ଗଛଟି ଉଡ଼ି ଉଡ଼ି ଆସିଲା ରାଜବାଟୀ ଆଡେ ।

ମନ୍ତ୍ରୀ ଦେଖିଲେ । ଦୁର୍ଗ ଉପରେ ବସି ଚମ୍ପାବତୀ କବରକୁ ଲକ୍ଷ୍ୟ ରଖିଥାଏ । ଖବର ଦେଇ ରାଜାଙ୍କ ପାଖକୁ ଧନେ ଓଳଏ ବି ଲୁହେଁ । ପୂର୍ବ ଏକ ସପ୍ତାହ ବିତିଲା । ତେବେ ସୁଦ୍ଧା କ ଆସିବାର କାରଣ କ'ଣ ? ଏହିପରି ସାତ ପାଞ୍ଚ ହୋଇ ଥରକୁ ଥର ସେ ଦୁର୍ଗ ଉପରେ ଚଢ଼ି ଅନାଉଥାଏ ବଳାସପୁର ସୈନ୍ୟ ଆସିବାକୁ ।

ଗଛଟି ଆସି ଭିତର ଦୁଆରେ ଅଟକ ଯିବା ଦେଖି ସେ ତର ତର ହୋଇ ବାର୍ ଦରଜା ଖୋଲି ଦେବାକୁ ଦଉଡ଼ି ଗଲା । ମାତ୍ର ବୁଝି ପାରିଲା ନାହିଁ କେହି ଜଣେ ତାକୁ ପିଛୁ କରିଛି ବୋଲି ।

ଦରଜା ଖୋଲିଲା ବେଳେ ମୁଣ୍ଡ ଉପରେ ବଜ୍ର ପରି ବସିଲା ଗୋଟିଏ ବାଧା । ସେ ବାଧାର ଆଘାତରେ ତାକୁ ତିନି ଭୁବନ ଅନ୍ଧାର ଦେଖାଗଲା । ତେଣିକି କଣ ହେଲା ସେ ବିଷୟରେ ତାର ଧାରଣା ନାହିଁ । କେବଳ ଚେତନା ଆସିଲା ବେଳକୁ ଦେଖାଗଲା ସାରା ଶରୀର ତାର ଲୌହ ଶିକୁଳିରେ ବନ୍ଧା ହୋଇଛି ଦୃଢ଼ଭାବେ । ହଲଚଲ ହେବାକୁ ଯୁ ନାହିଁ । କାଳେ ଚିତ୍କାର କରିବ, ଏଥିପାଇଁ ମୁହଁରେ ବନ୍ଧା ହୋଇଛି ଯବରଦସ୍ତ ତୁଣ୍ଡୀ । ଅତି ଗୁପ୍ତ ଆବର୍ଜନା ପୂର୍ଣ୍ଣ ଅନ୍ଧାରି ଘର । ସେହି ଘର ଭିତରେ ପଡ଼ି ଗଡ଼ୁଛି ସେ ।

ମାଆ ତାର ରମ୍ଭାବାଈ । ଯାଦୁ ବିଦ୍ୟାର ରାଣୀ । ଗଛ ଉପରେ ବସି ଉଡ଼ି ଉଡ଼ି ଆସେ । ସମ୍ବାଦ ଦିଏ ଓ ନିଏ । କାହାର ପ୍ରତି ଟିକେ ହେଲେ ଖାତିର ନ ଥାଏ ତାର । ବିଗୁଣି ଆଜିବ ଗୁପ୍ତ କୁଣ୍ଡେମୋଟ କରି ଆସିଛି । ବଡ଼ିଆ ସମ୍ବାଦ ନେଇ ଫେରିବ । ପାଞ୍ଚଲକ୍ଷ ଟଙ୍କା ତାର ବଳାସପୁର ରାଜାଙ୍କ ପାଖରେ ପାଉଛି । ପରୁଓ୍ୟା କ'ଣ । ଦରକାର ପଡ଼ିଲେ କହି ବୋଲି ସମ୍ବଲପୁର ରାଜ୍ୟର ଅଧେ ହେଉ କି ଚାରିପଣ ହେଉ

ନେବ । ଭାଗ୍ୟ ତା'ର ଜଳି ଉଠୁଛି । ଗୁଡ଼ିକ କାହିଁକି ? ଏହାପରେ ଭବିଷ୍ୟତ ସୁଖ କାମନାରେ ମନ ତା'ର ମସଗୁଲ ହୋଇ ଉଠୁଥାଏ । ମାଝ ଭେତରହେଲା କାହିଁକି ?

ମଲୁ ବଢେ ତ ଆସୁ ଆସୁ ଚମ୍ପାବଣ୍ଟ କବାଟ ଖୋଲି ଯାଇଛିଟି କଏ ଆଜ ଆସୁନ କାହିଁକି ? ଏମିତ ସାତପାଞ୍ଚ ହୋଇ ଭାବଲା—ଚମ୍ପା ବୋଧହୁଏ ଶୋଇପଡ଼ିଛି । ତେଣୁ ମୋ ଆସିବା ଜାଣି ପାରିନି ।

ଧୀରେ ଧୀରେ ଗଛ ଉପରୁ ଓହ୍ଲାଇ ଚାଳକୁ ଆସିଲା ଓ ଉତ୍ତର ଦରଜା ପାଖକୁ ଆଗେଇ ଗଲା । ଦରଜା ଖୋଲା ଅଛି । ଭିତରକୁ ପାଦ ବଢ଼ାଇବା ମାତ୍ରେ ମୁଣ୍ଡ ଉପରେ ବାଜିଲା ଗୋଟିଏ ବାଉଁଶ ପଳଅା ବାଧା । ସେତିକରେ ବଗୁଲା ଅଚେତା ହୋଇ ମାଟି କାମୁଡ଼ିଲା । ଚେତା ହେଲାବେଳକୁ ଦେଖିଲା ସେ କଠିନ ଲୁହା ଶିକୁଳିରେ ବନ୍ଧା ଝିଅ ପାଖରେ ଗଡ଼ୁଛି ।

ବଡ଼େ ଭାଇଙ୍କି ଦେଖି ହଠାତ୍ ଚମକି ଉଠିଲେ । କିଏ ହେଲା, କଏ ସେମାନଙ୍କ ଗୁପ୍ତ କଥା ଜାଣି ଏଭଳି କୌଶଳ କରିଥିଲା, କିଛି ଠିକ୍ କରି ପାରିଲେନି । ମା' ଭାବିଲା ଝିଅକୁ ଝିଅ ଭାବିଲା ମାଆକୁ । ଦଣ୍ଡେ ପର୍ଯ୍ୟନ୍ତ କାହାର ମୁହଁରୁ ପଦେ ହେଲେ କଥା ବାହାରିଲାନି । ଖାଲି ଆବାକାବା ହୋଇ ଘର ଛାତକୁ ଅନାଇ ରହିଲେ ।

ରମ୍ଭା ପଚାରିଲା—ଏ କି ଘଟଣା କଲେ ଚମ୍ପା ?

ଚମ୍ପା କହିଲା—ମୁଁ କିଛି ବୁଝିପାରୁନି ବୋଉ ! କିଏ ଆମ ଗତି ବିଧି ଲକ୍ଷ୍ୟ କରି ବୋଧହୁଏ ଗୁପ୍ତ କଥା ଜାଣି ପାରିଛି ।

ରମ୍ଭା ଟିକଏ ମୁରୁକିହସା ଦେଇ କହିଲା—ତା କପାଳ ଖରାପ ହେଲାଣି । ତା ନ ହେଲେ ନାଗ ସାପ ଲାଙ୍ଗୁଡ଼ରେ ହାତ ମାରିଥାନ୍ତା । ଆଚ୍ଛା ହଉ ଏଥର ଦେଖିବା, କିପରି ସେ କ'ଣ କରିବ । ଏତିକି କହି ମନେ ମନେ କଣ ମନ୍ତ୍ର ପଢ଼ିଲା ।

ଦେଖୁ ଦେଖୁ ଏତେ ଲୁହା ଶିକୁଳି ଝଟା ଛୁଣ୍ଡି ଟିକି ଟିକି ହୋଇଗଲା । ମା ଝିଅ ଦହେଁ ଝାଡ଼ି ଝୁଡ଼ି ହୋଇ ଉଠିଲେ । ରମ୍ଭା ପୁଣି ହାତ ହଲାଇ ଦେବାରୁ ଏତେବଡ଼ ରାଜ ଦୁର୍ଗଟା ଧୀରେ ଧୀରେ ହଲି ହଲି ଟଳେଇ ଭଳି ଉଡ଼ିବାକୁ ଆରମ୍ଭ କଲା । ଦାସ ଦାସୀ ଗୁଡ଼ାକ ଭୟରେ ଚିତ୍କାର କରିବାକୁ ଲାଗିଲେ ।

ହଠାତ୍ କିଏ ଜଣେ ଖୁବ୍ ଯୋରରେ ହସି ଉଠିଲା । ହସ ସରିଛି ସରିନି ଦୁର୍ଗ ପୁଣି ତଳକୁ ଖସିଲା । ଯେଉଁ ଜାଗାରେ ଥିଲା, ଠିକ୍ ସେହି ଜାଗାରେ ଆସି ଅଟକି ଅଥଚ ଭାବେ ରହିଗଲା । ରମ୍ଭା ଯେତେ ମନ୍ତ୍ର ପଢ଼ିଲେ ମଧ୍ୟ ଟିକିଏ ହେଲେ ହଲିଲାନି ।

ଏଣେ ମନ୍ତ୍ରୀବୁଢ଼ା ଯାଇ ସେନାପତିଙ୍କ ସଙ୍ଗେ ଗମ୍ଭୀର ପରାମର୍ଶ ଚଳାଇଲେ । ବିଳାସପୁର ସୈନ୍ୟ ଯୋଉ ବାଟ ଦେଇ ଆସିବାର କଥା ସେ ବାଟରେ ଗୋଟାଏ ପ୍ରଚଣ୍ଡ ଖାଇ ଖୋଳା ହେଲା । ବୃହତ୍ ପୁରୁଷ ଗଣ୍ଡିରୁ ପଙ୍କ ବୋହି ଯାଇ ତା ଉପରେ ବିଛାଇ ଦିଆଗଲା ଗୁଡ଼ାଏ କାଠପଟା । ପଟାର ମୂଳ ଗୋଟିଏ ଲୁହା ରେଲିଙ୍ଗରେ ବନ୍ଧା ଯାଇଥାଏ । ଦରକାରବେଳେ ସେଗୁଡ଼ିକ ଖୋଲି ଦେବେ ଯେପରି ପଙ୍କ ଭିତରେ ବୁଡ଼ିଯିବ । ସୈନ୍ୟସାମନ୍ତ-ମାନେ ହାତ ହତିଆର ପକାଇ ପ୍ରସ୍ତୁତ ହୋଇ ରହିଲେ । ଦେଶ ସମ୍ଭଲେଶ୍ୱରଙ୍କ ଆଦେଶ ଅନୁସାରେ ମନ୍ତ୍ରୀ ଓ ସେନାପତି ଦହେ ସାଥି ହୋଇ ଖୁବ୍ ସତର୍କ ଭାବେ ରାଜାପୁଅକୁ ଅନୁସନ୍ଧାନ କରିବାକୁ ବାହାରି ପଡ଼ିଲେ ।

ରାଜ ଦୁର୍ଗ ଭିତରେ ଭୂମୁଳକାଣ୍ଡ ଲାଗିଛି । ଝୁଙ୍କର ଝୁଙ୍କରାଣୀ ଗୁଡ଼ାକ ଯୋଉଠି ଯେପରି ଅବସ୍ଥାରେ ଥିଲେ ସେଇଠି ସେହିପରି ଅବସ୍ଥାରେ ପାଲଟି ଯାଇଛନ୍ତି ଗୋଟିଏ ଗୋଟିଏ ପଥର ପ୍ରତିମା । କୁଆଡ଼ୁ ଗୋଟାଏ ମହୁଲ ଗଛ ଆସି ରାଜବାଟୀର ଉତ୍ତର ଦୁଆରେ ଠିଆ ହୋଇଛି । କେହି ନ ଦେଖିବା ଆଗରୁ ମନ୍ତ୍ରୀ ଓ ସେନାପତି ଆସି ଦେଖିଲେ । ମନ ଭିତରେ ତାଙ୍କର ଝଡ଼ ଉଠିଲା । ଗଲେ ରାଜବାଟୀ ଭିତରକୁ ।

ସବୁଆଡେ ଶୂନ୍ ଶାନ । ଝୁଙ୍କର ଝୁଙ୍କରାଣୀ ଗୋଟିଏ ନାହାନ୍ତି, କେବଳ ସବୁ ଆଡ଼େ ଦେଖା ଯାଉଛି ଗୋଟିଏ ଗୋଟିଏ ପଥରର ମୂର୍ତ୍ତି । ରମ୍ଭା ଓ ଚମ୍ପାବତୀ ତରତର ହୋଇ ପଳାଇବାର ବନ୍ଦୋବସ୍ତ କଲେଣି । ଖୁବ୍ ସୁନ୍ଦର ଧରରନ୍ଧ୍ର ପୁଡ଼ା ପୋଟଳି ବନ୍ଧା ହୋଇଛି । ଏ କଥା ଦେଖି ମନ୍ତ୍ରୀ ପଚାରିଲେ—ଏ ସବୁ କଣ ?

ଚମ୍ପାବତୀ ଗର୍ଜି ଉଠି କହିଲା—ତୁମେ ନା ସେ କପଟ ମନ୍ତ୍ରୀ ! ମରିଯିବା ଛଳନା କରି ଗୁପ୍ତରେ ଲୁଚି ରହିଛ ପ୍ରତିଶୋଧ ନେବାକୁ । ଆସ ଦେଖୁଛି ମୁଁ । ଏହା କହି ଯାଦୁ ପ୍ରୟୋଗ କଲା—

"ମା ରାମଚଣ୍ଡୀ ଦେଇଛି ବର
ଅବାଟକୁ ବାଟ କର—ପଥରକୁ ପାଣିକର
ପାଣିକୁ ପଥର କର ।
ମୋ କାମରେ ବାଧା ଦେଉଛି ଯେ—
ମାଙ୍କଡ଼ ହୋଇ ଡେଇଁବ ସେ ।"

ମୁଠାଏ ଧୂଳି ଫୋପାଡ଼ିବା ମାତ୍ରେ ମନ୍ତ୍ରୀ ଓ ସେନାପତି ହୋଇଗଲେ ଯୋଡ଼ିଏ ମାଙ୍କଡ଼ । ରମ୍ଭାବାଈ ଖୁବ୍ ଜୋରରେ ହସି ଉଠିଲା ।

ତା ହସରୁ ପ୍ରତିହସ ବେଇ ହଠାତ୍ ଦେଖାଦେଲା କୁରେଇ । କହିଲା—

ଶିବ କଲୁଷ ଠାଣ
କାଟି ପକା ସବୁ ବାଣ ନଶାଣ ।
ଯାଦୁ ମନ୍ତ୍ରର ଫାଟୁ ପାଣି
ଆଜ୍ଞା ଦେଲେ ମା ପାର୍ବତୀ ରାଣୀ ।

ମନ୍ତ୍ର ପଢ଼ି ଝଟୋଟି ଭାଳ ମାରି ଦେଲା ମାତ୍ରେ ମନ୍ତ୍ରୀ ଓ ସେନାପତି ମଣିଷ ହୋଇ ଠିଆ ହୋଇଗଲେ ।

ରମ୍ଭା ବେଶ୍ୟା କହିଲା ହା ଏତେ ସାହସ- କହୁ କହୁ ଗୋଟାଏ ଗୋଖର ସାପ ହୋଇ ଧାଇଁ ଆସିଲା କାମୁଡ଼ ଦେବାକୁ ।

କୁରେଇ ହାତ ହଲାଇ ଦେବାମାତ୍ରେ କାନ୍ଥ ଉପରୁ ଡେଇଁ ପଡ଼ିଲା ଗୋଟାଏ ପାହାଡ଼ି ନେଉଳ । ସାପଟାକୁ କୋଡିଆ ପରି ମାଡ଼ି ବସିଲା । ସେ ତଳ ଉପରୁ କାଟୁ ବସିର ନକର ସାପ ଓ ନେଉଳ ଉପରେ ମୁଠାଏ ମନ୍ତ୍ରଧୂଳି ପକାଇ ଦେଲା । ଦୁହେଁ ମଣିଷ ହୋଇ ଠିଆ ହୋଇଗଲେ ।

ମନ୍ତ୍ରୀ ସେନାପତି ଦୁହେଁ ଚମକି ପଡ଼ିଲେ । ତାଙ୍କ ଆଗରେ ନଜେ ରାଜାପୁଅ ଧର୍ମକୁମାର ଠିଆ ହୋଇଛୁ ।

ସ୍ୱପ୍ନ ଦେଖି ବଳବଳେଇ ଉଠିଲା ପରି ଦୁହେଁ ଯାକ କୁମାର କୁମାର ବୋଲି ଚିତ୍କାର କରି ତାକୁ କୁଣ୍ଢାଇ ପକାଇ କାନ୍ଦିବାକୁ ଲାଗିଲେ ।

ଚମ୍ପାବତୀ ପାଟିରୁ କଥା ବାହାରିଲାନ । ମୁଣ୍ଡ ଚକର ଦେଲା- କ'ଣ କରିବ, କୁଆଡ଼େ ଯିବ, କିଛି ଠିକ୍ କରି ନ ପାରି ତଳେ କଣ୍ଟୁଡ଼ ହୋଇ ପଡ଼ିଲା ।

ଧର୍ମକୁମାର ହସି ହସି କହିଲା—ସାବାସ୍ କୁହୁକଣୀ ଚମ୍ପାବତୀ ! ଖୁବ୍ ସାବଧାନ ଅଛୁ ।

କଥା ପଦକ ଶୁଣିବା ପାଇଁ ଉମାଦତ୍ତର ଆଉ ଧୈର୍ଯ୍ୟ ନଥିଲା । ସେଠେବେଳକୁ ସେ ପୂରା ବେହୋସ ।

ରମ୍ଭା ପୁଣି ଗୋଟାଏ ଏ ଭଳି ଯାଦୁ ଆରମ୍ଭ କଲା ଯେ, କେହି କାହାକୁ ଦେଖା ଗଲେନ । ସାରା ରାଜବାଟୀଟା ଅନ୍ଧାର ହୋଇ ଉଠିଲା । ଶୂନ୍ୟରୁ ବଡ଼ ବଡ଼ ଟେକା ପଥର ପଡ଼ିଲା । ପ୍ରବଳ ବତାଶ ହେତୁ କେହି ଦମ୍ଭ ଧରି ଠିଆ ହୋଇ ପାରିଲେନ । ଏହି ସୁଯୋଗରେ ସେ ଚମ୍ପାକୁ ସେଇ ଗଛ ଉପରକୁ ପଳାଇବା ପାଇଁ ଦରବର କଲା ।

କୁରେଇ ଏ କୁହୁକ ବିଦ୍ୟାର ଉତ୍ତର ଜାଣେ ନାହିଁ । ତେଣୁ କାବା ହୋଇ ରହିଗଲା । ସମସ୍ତେ ଭୟରେ ଖାଲି ଚିତ୍କାର କରିବାକୁ ଲାଗିଲେ । ରମ୍ଭା ମୂର୍ଚ୍ଛିତା ଚମ୍ପାକୁ କାନ୍ଧରେ ପକାଇ ପଳାଇବାକୁ ବସିଛି । ଠିକ୍ ଏତିକବେଳେ ଦୁର୍ଗଭିତରେ ଦେଖାଗଲା ଗୋଟିଏ ଜ୍ୟୋତି । ସହସ୍ର ସୂର୍ଯ୍ୟ କିରଣ ଭଳି ଆଲୋକ ଜଳି ଉଠିଲା । ଝଡ଼, ପବନ, ଢେଲା, ବର୍ଷା ଆଉ ହୋଇ ପାରିଲାନ ।

ହସି ହସି ଘର ଭିତରକୁ ପଶି ଆସିଲେ ସେହି ଅଲେଖ-ବାବା ଜଣକ । ଗୁରୁ ଗମ୍ଭୀର ସ୍ୱରରେ କହିଲେ—ଯାଦୁକାରୀ ରମ୍ଭା ! ତୁମେ ତୁମ କୁହୁକ ଜାଲରେ ଯେ ଦୁନିଆକୁ ଛନ୍ଦି ଦେଇପାର, ମାତ୍ର ଅଲେଖ ନିରଞ୍ଜନ-ଧର୍ମ ପାଖରେ ପାରି ଉଠିବନି । ସାବଧାନ ! ତୁମ ଅନ୍ୟାୟ ଅତ୍ୟାଚାରର ସୀମା ଟପିକରି ବଢି ଯାଇଛି । ତେଣୁ ତାର ପ୍ରାୟଶ୍ଚିତ ଭୋଗ କରିବାକୁ ପଡ଼ିବ, ଆଉ ପଳାଇବା ପାଇଁ ଚେଷ୍ଟା କରନା । ଚମ୍ପାକୁ ତଳେ ରଖ । ନଜେ ଠିଆହୁଅ । ବିଳାସପୁର ରାଜା ତୁମକୁ ଅପେକ୍ଷା କରି କରି ବିଳମ୍ବ ହେବାରୁ ସୈନ୍ୟ ଗଣରେ ଆସୁଛନ୍ତି । ତାଙ୍କ ଧର୍ମ ତାଙ୍କ ପଛେ ପଛେ ଆସୁଛି—ଅବଶେଷରେ ଦେଖିବ "ଯତୋଧର୍ମ-ତତୋଜୟଃ ।"

କୁବେରଇ ଆଡ଼େ ଅନାଇ କହିଲେ—କି' କୁବେରଇ ଆଜ ହେଲା କାହିଁକି । ତୋ ମୋହିନୀ ଜାଲରେ ଏ ମା' ଝିଅଙ୍କୁ ବାନ୍ଧ ପକା । ସବୁ କାମ ସରିଗଲେ ମହାରାଜାଙ୍କ ଦରବାରରେ ତାଙ୍କର ବିଚାର ହେବ । ଧର୍ମକୁମାରର ଧର୍ମବଳ ଥିବାରୁ ମନ୍ତ୍ରିମା ଅଲେଖ ନିରଞ୍ଜନ ଅଛନ୍ତି । ଭୟ ନାହିଁ ।

ସମସ୍ତେ ସାଧୁ ବାବାଙ୍କ ପାଦତଳେ ମୁଣ୍ଡ ଲଗାଇଲେ । ପାଦ-ଧୂଳି ନେଇ ସାରି ଦେଖିଲା ବେଳକୁ ସେ ଆଉ ନାହାନ୍ତି । ଅନ୍ତର୍ଦ୍ଧାମି ପୁରୁଷ ଅନ୍ତର୍ଦ୍ଧାନ ହୋଇ ଯାଇଛନ୍ତି ।

ରମ୍ଭା ଓ ଚମ୍ପାବତୀ ପଳାଇ ଯିବାକୁ ତଙ୍ଗ ତଙ୍ଗ ହେଉଥାନ୍ତି । କ'ଣ କରିବେ, କେମିତି ପଳାଇବେବୋଲି ବିଚାର କରୁ କରୁ ପାଲଟା ବିଦ୍ୟାଟା ମନେ ପଡ଼ିଲା । ତହୁଁ ହଠାତ୍ ଯୋଡ଼ାଏ ପାରା ହୋଇ ଉଡ଼ିଯିବା ବେଳକୁ କୁବେରଇର ଦାଗୁରା ମନ୍ତ୍ର ବଳରେ ଜାଲ ଭିତରେ ବନ୍ଧ ହୋଇଗଲେ । ଆଉ ଫିଟି ଯିବାର ଉପାୟ ନାହିଁ । ଚଟେଇ ଧରା ଜାଲରେ ଗୋଡ଼ ବେକ ଅଣ୍ଟା ସବୁ ବନ୍ଧ ହୋଇ ରହିଛି ।

ଧର୍ମକୁମାର କହିଲା—ମନ୍ତ୍ର ବଳରେ ପୁଣି ଖସିଯିବେ ସେ ।

କୁବେରଇ କହିଲା—ବସୁନ୍ଧରଣ ଧୂଳିର କରାମତି କମ୍ ନୁହେଁ । ତୁମେ ଦେଖ, ମୁଁ ତାଙ୍କୁ କ'ଣ କରୁଛି—ଏହା କହି ହାତରେ ମୁଠାଏ ଧୂଳି ଧରି ମନ୍ତ୍ର ପଢ଼ିଲା—

ଓଁ ଧୂଳିତ ଧୂଳି ମୋର ମରୁଭୂମି ଧୂଳି
ଯହିଁକି ପେଷିଲେ ତହିଁ ଲାଗୁ ପୂଳ ପୂଳ ।
ଯାଦୁ ବିଦ୍ୟାରେ ତେଣୁ ଏ ବଳଯାନ୍ତୁ ମୋତେ
ତେଣୁ ତଥାର କହୁଛୁ ବସୁନ୍ଧରଣ ତୋତେ ।
ଏମାନଙ୍କ ମନ୍ତ୍ର ବିଦ୍ୟା ପାଶୋରାଇ ଦେବୁ
ଏ ମର ସଂସାରେ ସବୁ ପଞ୍ଚଭୂତ ନେବୁ ।

ହନୁମାନ ଶାଳ ଆଜ୍ଞା ଦେଇଛନ୍ତି ଯେଣୁ
ଲାଗ ଲାଗ ମନ୍ତ୍ର ଧୂଳି ଏମାନଙ୍କୁ ତେଣୁ ।
ସବୁ ବିଦ୍ୟା ଏହାଙ୍କର ବିସ୍ମରଣ ଯାଉ
ପ୍ରଭୁ ରାମଙ୍କ ମହିମା ସଂସାରରେ ଥାଉ ।

ଏହି ମନ୍ତ୍ରଟି ପଢ଼ି ସାରିବା ପରେ ରମ୍ଭା ଓ ଚମ୍ପାବତୀଙ୍କର ସମସ୍ତ ଯାଦୁବିଦ୍ୟା ବିସ୍ମରଣ ହୋଇଗଲା । କୁରେଇ ଆଉ ଗୋଟିଏ ପାଳିଠ ମନ୍ତ୍ର ଧୂଳି ପକାଇ ତାଙ୍କୁ ମଣିଷ କରି ଦେଲା ପରେ ମନ୍ତ୍ରୀ କହିଲେ— ମା ! ସେମାନଙ୍କୁ ଏ ଜାଲରୁ କାଢ଼ି କୁହା ଯନ୍ତାରେ ବନ୍ଦୀ କରିବା ।

ସେହିପରି କରାଗଲା । ଗୋଟିଏ ଯନ୍ତାରେ ରମ୍ଭା ଓ ଚମ୍ପା, ଆଉ ଗୋଟିଏ ଯନ୍ତରେ ବଙ୍ଗା ବନ୍ଧନ ହୋଇ ରହିଲେ ।

ମନ୍ତ୍ରୀ, ସେନାପତି, ଧର୍ମକୁମାର ଓ କୁରେଇ ବସି ଜୀବନର ସମସ୍ତ ଦୁଃଖ ସୁଖ କଥା ପକାଇଲେ । ରାଜା ରାଣୀଙ୍କ ସନ୍ଧାନ କିପରି ମିଳିବ ଏଥିପାଇଁ ଭାବେଣି ପଡ଼ିଲା । ନଗରରେ ହଜାର ହଜାର ବଳେଇ ଅଛନ୍ତି । ସେମାନଙ୍କ ମଧ୍ୟରୁ କେଉଁ ବଳେଇ ଯେ ରାଜାରାଣୀ ଏ କଥା କିପରି ସ୍ଥିର କରାଯିବ । ଏହି ବିଷୟର ପଡ଼ୁ ପଡ଼ୁ କୁରେଇ କହିଲା—ଆପଣମାନେ କିଛି ଚିନ୍ତା କରନ୍ତୁନି । ଯେ କୌଣସି ମତେ ମୁଁ ମୋ ଶାଶୂ ଶ୍ୱଶୁରଙ୍କ ସନ୍ଧାନ ନେଇ ତାଙ୍କୁ ମୁକ୍ତ କରିବି ।

ବାହାରୁ ଶୁଣାଗଲା ବିଳାସପୁର ସୈନ୍ୟ ମାଡ଼ି ଆସୁଛନ୍ତି । ଏ କଥା ଶୁଣି ଧର୍ମକୁମାର, ମନ୍ତ୍ରୀ ଓ ସେନାପତି ବାହାରି ପଡ଼ିଲେ । ଏକା କୁରେଇ ରହିଲା ରାଜବାଟୀରେ । ଆରମ୍ଭ କଲା ଗୋଟିଏ ବଳେଇ ଭୋଜି ।

ମନ୍ତ୍ର ବଳରେ ଗୋଟିଏ ମାଟିଆ ଆଣି ବଳେଇ କରିଦେଲା, ତା ନାଁ ଦେଲା—ଡାକୁଆ ମ୍ୟାଉଁ । କାନରେ କହିଦେଲା ତାର ଭୁନ ଭୁନ କରି—

ମ୍ୟାଉଁରେ ମ୍ୟାଉଁ
ଡାକ ନାମ ତୋର ଡାକୁଆ ଥାଉ
ବୁଲିବୁ ସହର ଯାକ
ଭୋଜ ଖାଇବାକୁ      ଆସନ୍ତୁ ବିଲେଇ
ଶୁଣିବା ମାତ୍ରେ ତୋ ଡାକ
ଅମାବାସ୍ୟା ପର୍ବଣ ଯେ ନ ଆସିବ ।
ଗଣ୍ଡ ଫାଟି ତାର ଜୀବନ ଯିବ ।

ଏକଥା ଶୁଣି ଡାକୁଆ ମ୍ୟାଉଁ ବାହାରି ପଡ଼ିଲା । ମୁଣ୍ଡ ଉପରେ ମାରିଥାଏ ଗୋଟିଏ ନାଲି ପତାକା । ଅନ୍ଧସନ୍ଧରେ ବୁଲି ସବୁ ବିଲେଇଙ୍କି ଦେଖାକରେ । ମୁହଁରେ ମୁହଁ ଲଗାଇ କ'ଣ କ'ଣ କହେ । ଶୁଣିବା ବିଲେଇଟି ମ୍ୟାଉଁ ମ୍ୟାଉଁ ହୋଇ କ'ଣ ଯବାବ ଦିଏ, ତା କଥା ସେ ବୁଝେ । ତା କଥା ସେ ବୁଝେ । ଏମିତି ଏମିତି ଗାର୍ଦ୍ଦ ତିନଦିନ ଜାକ ସେ ନଗରଯାକ ବୁଲି ନିମନ୍ତ୍ରଣ ଦେଲା ।

ତେଣେ ବିଳାସପୁର ସୈନ୍ୟ ମାଡ଼ି ଆସି ତାଙ୍କ ଫଙ୍କ ଖାଇ ପାଖରେ ପହଞ୍ଚି ଗଲେଣି । ସମ୍ବଲପୁର ସୈନ୍ୟମାନେ ବି ତୁସିଆର ଅଛନ୍ତି । ମନ୍ତ୍ରୀଙ୍କ ବଗାଦରେ ତାଙ୍କୁ କେହି ପ୍ରତିରୋଧ କରୁନାହାନ୍ତି । ବାଟ ଘାଟ ମୁକ୍ତ । ତେଣୁ ବିଳାସପୁର ରଜା ସୈନ୍ୟସାମନ୍ତ, ଘୋଡ଼ା ହାତୀ ଘେନି ଘୋର ପରାକ୍ରମରେ ମାଡ଼ି ଆସିଲେ । ଫଙ୍କଖାଇ ଉପରେ ଯୋଉ ପଟା ସବୁ ବିଛେଇ ଦିଆ ଯାଇଥିଲା, ତାହା ଜଣା ଯାଉଥିଲା ଗୋଟିଏ ପ୍ରକାଣ୍ଡ ସେତୁପରି । ରଣମତ୍ତ ସୈନ୍ୟମାନେ ପ୍ରବଳ ବେଗରେ ଆସି ତା ଉପରେ ଚଢ଼ିଲେ ।

ସମ୍ବଲପୁର ସୈନ୍ୟମାନେ ସେ ପର୍ଯ୍ୟନ୍ତ ନୀରବ । ବିଳାସ-
ପୁରିଆ ବଢ଼ୁଥାନ୍ତି, ତମ୍ପାବାଡ଼ି ଖୁବ୍ କରନ୍ତି । ଆମକୁ

ଏଥର ଆଉ ଯୁଦ୍ଧ କରିବାକୁ ପଡ଼ିବନି । ବିନା ବାଧାରେ ଆମେ ରାଜ୍ୟଟା ଦଖଲ କରି ନେବା । ଏହାପରେ ଆନନ୍ଦ ଓ ଉନ୍ମାଦନାରେ ଯେତେବେଳେ ସମସ୍ତେ ପଙ୍କଖାଇ ଭିତରକୁ ଆସିଗଲେ, ଠିକ୍ ସେତିକିବେଳେ ମନ୍ତ୍ରୀଙ୍କ ଆଦେଶରେ ତିନିଥର ତୋପ ଫୁଟିଲା ।

ବସ୍ତା ବସ୍ତା ସୈନ୍ୟମାନେ ପଟାଗୁଡ଼ିକର ଶିକୁଳି ଖୋଲି ଦେବା ମାତ୍ରେ ହୁଲସ୍ଥୂଳ କାଣ୍ଡ ଉଠିଲା । ଘୋଡ଼ା ହାତୀ ମଣିଷ ଗୁଡ଼ାକ ଦେଖୁ ଦେଖୁ ବୁରବୁରାକ ପଙ୍କ ଭିତରେ ବୁଡ଼ିବ ଯିବାକୁ ଲାଗିଲେ । ଖାଲି ବିକଳ ଆକୁଳ ଚିତ୍କାର ଛଡ଼ା ଆଉ କିଛି ଶୁଣାଗଲା ନାହିଁ । ସମ୍ବଲ ପୁରିଆ ଉପରେ ଠିଆ ହୋଇ ହସି ହସି ଦେଖୁଥାନ୍ତି । ରାଜାଙ୍କଠୁ ଆରମ୍ଭ କରି ଶ୍ରେଷ୍ଠ ପ୍ରଧାନ ପର୍ଯ୍ୟନ୍ତ ଦେଖୁ ଦେଖୁ କର୍ଦ୍ଦମ—ସମାଧି ଗ୍ରହଣ କଲେ ।

ରାଜ୍ୟ ସାରା ହୁରି ପଡ଼ିଲା ଧର୍ମକୁମାର କି ଜୟ । କଥାରେ ଅଛି— ବାଜା ବାଇଦ କୋଶେ, ଭୁଣ୍ଡ ବାଇଦ ସହସ୍ର କୋଶ ।

ନୂଆ କଥାଟିଏ ଘଟିଲେ ମୋଟେ ଲୁଚି ରହେନି । ମନ୍ତ୍ରୀ ବଞ୍ଚିବା, ରାଜାପୁଅ ଲେଉଟି ଆସିବା, ଚମ୍ପାବତୀ ଓ ରତ୍ନାବେଣ୍ୟାଙ୍କ କାରସାଦି ଜଙ୍ଗଲୀଟିଅ କୁରେଇ ଓ ଅଲେଖ ବାବା ଇତ୍ୟାଦିଙ୍କ ମହିମା କରଣୀ ଓ ଗୁଣଗ୍ରାମ ସାରା ରାଜ୍ୟରେ ଖଇ ଫୁଟିଲା ପରି ଫୁଟୁଥାଏ । ଲୋକେ ବାଃ ବାଃ କରି ହେଣ୍ଡିମାରୁ ଥାନ୍ତି । ରେରେକାର ଶବ୍ଦରେ ହାଟ ବଜାର ବାଟ ଘାଟ କମ୍ପମାନ ହେଉଥାଏ ।

ଭାବନା ଥାଏ ରଜା ରାଣୀଙ୍କ କଥା । ସ୍ବରଞ୍ଜନ୍ତେ ପ୍ରଶ୍ନ ଆସେ— ରାଜାରାଣୀ କୁଆଡ଼େ ଗଲେ ।

ମନ୍ତ୍ରୀ କହନ୍ତି—ଅପ୍ତଧରି ଅପେକ୍ଷା କର । ବୋଧହୁଏ ରାଣୀଙ୍କ ହଳେଇ ଖୋଜ ପରେ ତାଙ୍କ ଦର୍ଶନ ପାଇବ ।

ଲୋକମାନେ ଆବାକାବା ହୋଇ ଝଲେଇମାନଙ୍କ ଭୋଜି ଦେଖିବାକୁ ପାଦ ଟେକି ରହିଲେ । କାନେ କାନେ ଯାହା ଶୁଣା-ଗୁଣା ନାହିଁ, ସେହିସବୁ ଅଦ୍ଭୁତ କଥା ଆଖି ସାମନାରେ ଦେଖିବାକୁ ମିଳୁଛି । ଲୋକମାନେ କୌଣସି ଯାଦୁନଗରୀରେ ପହଞ୍ଚିଲା ପରି ମନେ କରୁଥାନ୍ତି ।

ଡାକୁଆ ମ୍ୟାଉଁ ସମୁଦାୟ ଦଶ ହଜାର ଦୁଇ ଗୋଟି ଝଲେଇକୁ ନିମନ୍ତ୍ରଣ ଦେଇ ନେଇଥିଲା । ଆଗରୁ ଦିନ ବାର ଧରାଯାଇଥାଏ । କୁରେଇକୁ ଫୁର୍ସତ ନାହିଁ । ତା ଦରବାରରେ ମନ୍ତ୍ରୀ, ସେନାପତି ଓ ଧର୍ମକୁମାର ଶାନ୍ତମତ ଖାଦ୍ୟ ସାମଗ୍ରୀ ଯୋଗାଡ଼ କରିବାରେ ଲାଗିଥାନ୍ତି । ବଢ଼ିଆ ସୂପକାରମାନେ ଆସି ଖୁବ୍ ଭଲ ଭଲ ଖାଦ୍ୟ ପଦାର୍ଥ ରାନ୍ଧିଲେ । ଗୋଟିଏ ବିରାଟ ପଡ଼ିଆରେ ପରିଷ୍କାର ହୋଇ ପଙ୍ଗତ ଲାଗିବାର ବରାଦ ହେଲା ।

ଝଲେଇମାନ ଧୀରେ ଧୀରେ ଆସି ପହଞ୍ଚିବାରୁ ପଟ ପକାଇ ଖାଦ୍ୟ ସାମଗ୍ରୀ ବଢ଼ାଗଲା ସବୁ ଖଲିପତ୍ରରେ । ଯୋଡ଼ିଏ ପାରୁଣ ସୁନା ଥାଳରେ ବଢ଼ା ହେଲା ବସିବାପାଇଁ ଯୋଡ଼ିଏ ମାତ୍ର ଆସନ ପଡ଼ିଲା । ବାକି ଦଶ ହଜାର ପାରୁଣ ପାଙ୍ଗରେ ଆସନ ନଥିଲା ।

ଝଲେଇମାନେ ପହଞ୍ଚି ସିବାରୁ ଡାକୁଆ ମ୍ୟାଉଁ ମଟ୍ଟିକା ଆସି ସାତଥର ବୋବାଇ ଦେଲା । ତାପରେ ଝଲେଇମାନେ ଖପଖାପ ଆସି ଖାଇବାରେ ଲାଗି ପଡ଼ିଲେ ।

କୁରେଇ ଅନାଇ ଥାଏ । ଯେଉଁ ଝଲେଇ ଯୋଡ଼ିକ ଆସନରେ ବସି ସୁନା ଥାଳରେ ଖାଉଥିଲେ ତାଙ୍କୁ ଧରି ଆଣିବା ପାଇଁ ମନ୍ତ୍ରୀଙ୍କୁ କହିଲା ।

ଝଲେଇମାନେ ଖାଇପିଇ ବିଦାୟ ନେଲା ପରେ ମନ୍ତ୍ରୀ ଲୋକ ଲଗାଇ ସେହି ଝଲେଇ ଯୋଡ଼ିକ ଧରାଇନେଲେ ।

କୁବେରଙ୍କ ତାଙ୍କୁ ନମସ୍କାର କରି ମନ୍ତ୍ର ପାଣିରେ ଗାଧୋଇ ଦେଲ ଓ କଲ୍ପବୃକ୍ଷ ମନ୍ତ୍ର ପଢ଼ି ସାତ କେରା ଦୁବରେ ଝାଡ଼ି ଦେଲା ମାତ୍ରେ ରାଜା ରାଣୀ ଦେହଧରି ଠିଆ ହେଲେ ।

ଆଜି ତାଙ୍କର ପାଗଳାମି ନ ଥିଲା । ଖାଲି ଆବା କାବା ହୋଇ ସମସ୍ତଙ୍କୁ ଅନାଇ ରହିଲେ । ଧର୍ମକୁମାର, କୁବେରଇ, ମନ୍ତ୍ରୀ, ସେନାପତି ଓ ଉପସ୍ଥିତ ଥିବା ପ୍ରଜା ପାଠକ ରାଜ କର୍ମଚାରୀ ଇତ୍ୟାଦି ତାଙ୍କ ପାଦତଳେ ମୁଣ୍ଡିଆ ମାରି କହି ଉଠିଲେ—ମହାରାଜାଙ୍କର ଜୟ ହୋଇଛୁ । କୁମାର ନୂଆବୋହୂ ଘେନ ଫେରି ଆସିଛନ୍ତି ।

ଏକଥା ଶୁଣି ଶୁଣି ରାଜା ରାଣୀଙ୍କ ଆଖିରୁ ଆନନ୍ଦାଶ୍ରୁ ବହିବାକୁ ଲାଗିଲା । ସେ ଆନନ୍ଦରେ ଅଧୀର ହୋଇ ଆଗେ ପୁଅ ବୋହୂଙ୍କୁ କୁଣ୍ଢ ଉ ପକାଇଲେ ।

ସବୁ କଥା ଘଡ଼ିଗଲା । ରାଜା ରାଣୀ ଶୁଣିଲେ । ବସ୍ତୁରରେ ରମ୍ଭା ଓ ତମ୍ବାବର୍ଣ୍ଣଙ୍କର ହେଲା ଶୂଳୀରେ ବସିବା ପାଇଁ ହୁକୁମ । ବଳାସପୁର ଆସିଲା ସମ୍ବଲପୁରର ଖାସ ଦଖଲରେ । ପଥର ହୋଇ-ଥିବା ଦାସ ଦାସୀମାନଙ୍କୁ ମନ୍ତ୍ର ବଳରେ ଜୀବନ ଦେଲା ।

ସମସ୍ତେ ମନ୍ତ୍ରୀଙ୍କୁ ପ୍ରଶଂସା କଲେ ଯେତିକ, କୁବେରଇକୁ ପ୍ରଶଂସା କଲେ ସ୍ଥିର ସେତିକ—ଏଣୁ କଥାରେ ଅଛୁ—

ଯେମନ୍ତ କରମ କରିବ
ଫଳଟି ତେମନ୍ତ ମିଳିବ ।

ନର୍ମଳ ଯା ମନ ତାକୁ ଭଗବାନ
ନଅନ୍ତି ସରଳ ବାଟେ

କୁଟ କପଟୀଙ୍କୁ କପଟ ଖଣ୍ଡାକୁ
ପେଲି ଦେଉଥାନ୍ତି ଆଣ୍ଠେ ॥

ବୁଝିଲୁ ନାଁ ବଗୁଲି ? ମୋ କଥାଟି ହେଲା ଶେଷ
ରାଣୀ ବାନ୍ଧୁଥିଲେ କାଳିଆ କେଶ ।
ମେଣ୍ଢା ଚରଗଲେ ଗଣି
ଡାୟାର ସାହେବ ଗୁଳିରେ ଗୁଳି ମାରିଣ
ଉଦ୍ଧାମ ସିଂହ ପାଇଲେ ଫାଶୀ ।
ବଙ୍ଗଆ ସନ୍ତତ ଭଲ ପିଲା
ଗଡଜାତ ପ୍ରଜା ମଣ୍ଡଳେ ଥିଲା ।
ଅସହଯୋଗରେ ଥିଲେ ତା ଶିକ୍ଷା
ମୁକ୍ତି ସଂଗ୍ରାମରେ ନେଇଣ ଦୀକ୍ଷା
ଗୁଳି ଆଗେ ଦେଲେ ଛାତି,
ଧନ୍ୟ ଧନ୍ୟ ତାର ଦେଶ ପ୍ରେମ ଭାଇ
ଧନ୍ୟ ଅଟେ ସେହି ଜାତି ।

ବଗ କଥା ଶୁଣି ବଗୁଲି ଟିକିଏ ମୁରୁକି ହସା ଦେଇ କହିଲା ନେ, ଏଇ କଥାଟା କହିବୁ ବୋଲି ଏତେ ଭୂମିକା କରୁଥିଲୁ ? ଏବେ ମୋ କଥାଟା ମନଦେଇ ଶୁଣ । କହିଲ, କହିଲ ।

ମନ ଦେଇ କାନ ପାରି ଶୁଣ ଶୁଣ କଥା
ଟୁକୁନା ମାଆର ଚେଣେ ଛନ୍ଦି ଥିଲା ମଥା ।
ଟୁକୁ ମୁଷି ଆସି ଧୀରେ ଦେବାକୁ ଫୁଟାଇ
ରହିଗଲେ ମୁଣ୍ଡବନ୍ଧା କାନ ହେଲେ ଖାଇଁ ।
ଖଣ୍ଡବଣେ କରିଥିବା ଚରୁଗୁଣୀ ଛୁଆ
ତାକୁ ଖାଇ ନେଲେ ଆସି ବଗୁଲିଆ କୁଆ ।
ସଇତାନ ବୁଢ଼ା ଦେବା ଏକମାତ୍ର ରଡ଼ି
ସରଗରୁ ସୂର୍ଯ୍ୟ ଚନ୍ଦ୍ର ପଡ଼ିଗଲେ ଝଡ଼ି ।
ଘୋଳିଆ ମୁହଁରେ ବସି କୁଳିଆ ପଠାଣ
ଛିମି ଲାଙ୍ଗୁଡ଼ି ଟାଣିଲା କରି ଜୋର ଟାଣ ।

ଡେଇଁ ପଡ଼ ଗଳ୍ପ ତମି କୁମ୍ଭୀର ଘରକୁ
ଝୁନ କର ଧର ଆଣିଲ୍ଲ କଦଳୀ ଦ୍ୱେରକୁ
ରଙ୍ଗା ଟୋକା କାଟୁଅଛୁ ସରଗରେ ବାଣୀ
କହିଲ ଶୁଣୁଥା—

## ମୀନା କୁମାରୀ କାହାଣୀ

ଖେଖା ଖେଖା ବଇଶାଖ ମାସ । ଗାଁ ଗହଳରେ ମୁନ୍ଦାଏ ପାଣି ପାଇଁ ଲୋକେ କୋଣେ କୋଣେ ବାଟ ଚାଲି ହଇରାଣ ହୋଇଛନ୍ତି । ଗାଈ ମଇଁଷିଙ୍କଠୁ ଆରମ୍ଭ କରି ବାଘ ସିଂହ ପର୍ଯ୍ୟନ୍ତ ଭେଟ ହେଉଥାନ୍ତି ଝରଣା କୂଳେ । ଦିନଗୁଡ଼ାକ ଖରା ଟାଆଁସିଆ ଲାଗୁଥାଏ । ଦିନ ପ୍ରହରରେ ହେଲାଠୁଁ ନିଆଁ ପରି ତାତି ବୋହି ଆସେ ।

ଏ ଭଳି ଗୋଟିଏ ଦିନରେ ରଜାପୁଅ ମହେନ୍ଦ୍ର, ସିଏ ପକ୍ଷୀରାଜ ଘୋଡ଼ା ଉପରେ ବସି ଦଉଡ଼ୁଛି ଶିକାର କରିବାକୁ । ସଙ୍ଗରେ କେହି ନାହାନ୍ତି । କାନ୍ଧ ଉପରେ ପଡ଼ିଛି ଖଣ୍ଡେ ଧନୁ । ଆଉ କାନ୍ଧରେ ଶର ତୂଣୀ । ଦେହରେ ଯୋଉ ପୋଷାକ ପିନ୍ଧିଛି ସେ ସବୁ ତିଆରି ହୋଇଛି ଲୁହା ପଟାରେ । ଖରାରେ ଗମ ଗମ ହୋଇ ଝାଳ ବୋହି ଯାଉଥାଏ । ହେଲେ ସାହସୀ ଓ ବଳବାନ ରଜାପୁଅ କିଛି କଥା କୁ ଖାତିର ନ କରି ଛୁଟିଥାଏ ବେପରୁଆ ।

ଆଗରେ ଘୋର କାନ୍ତ ଜଙ୍ଗଲ ଓ ପାହାଡ଼ । ଦୂରରୁ ଅନାଇ ଦେଲେ ଛାତି ଦମକା ଉଠୁଥାଏ । ଶହ ଶହ ବନ୍ୟଜନ୍ତୁଙ୍କ ଧାଁ ଧପଡ଼ରେ ଖଣ୍ଡ ମଣ୍ଡଳରେ ଚମକ ଲାଗୁଥାଏ । ଏମିତି ବେଳେ ଦେଖାହେଲା ଗୋଟିଏ ଦିବ୍ୟ-ହରିଣ । ସତେକି ତା ଉପରେ କିଏ ସୁନ୍ଦରୁସାର ଖୋଜ କରି ସୃଜଣୀ କରି ଦେଇଛି,

ଆଜି ସେ ରୁପା ପତ୍ର ଉପରେ ଗୋଟିଏ ଗୋଟିଏ ହୀରାଫୁଲ ଜଡୋଇଥିବା କରି ଦେଇଛନ୍ତି ।

ମଚ୍ଛିନ୍ଦ୍ର ହରିଣଟିକୁ ଦେଖି ଚମକି ପଡ଼ିଲେ । ଏ ଭଳି ଗୋଟିଏ ରୁପେଲି ହରିଣ ସେ ଜୀବନରେ କେବେହେଲେ ଦେଖିନାହାନ୍ତି । ତେଣୁ ତାଙ୍କୁ ଆଶ୍ଚର୍ଯ୍ୟ ଲାଗିଲା ଯେମିତି, ଆନନ୍ଦ ଲାଗିଲା ସେମିତି । ଭାବିଲେ—ଏ ହରିଣଟିକୁ ଜୀଅନ୍ତା ଧରିନେଲେ ଦେଶର ଲୋକମାନେ ଦେଖି ଖୁବ୍ ଖୁସିହେବେ । ତେଣୁ ସେ ତୀକ୍ଷଣମୁନା ଶର ନମାରି ମାରିଲେ ଗୋଲେଇ ଫଳା । ହରିଣ ଗୋଡ଼ରେ ବାଜି ଛୋଟ ହୋଇଗଲେ ଧରି ପକାଇବାରେ ସୁବିଧା ଥାଏ ।

କଥାରେ ଅଛି—ବିଧିର ଗତି ବିଚିତ୍ର । ତେଣୁ ମଚ୍ଛିନ୍ଦ୍ରର ଅବ୍ୟର୍ଥ ଲକ୍ଷ୍ୟ ଗୁଡ଼ାକ ଆଜି ବ୍ୟର୍ଥ ହୋଇ ଯାଇଛି । ଗୋଟିଏ ହେଲେ ଫଳା ହରିଣ ଦେହରେ ବାଜୁନି । ସେ ଖାଲି ଖେଳକୁ ଖେଳ ବିଚିତ୍ର ଭଙ୍ଗୀ ଦେଖାଇ ଦଉଡ଼ି ପଳାଉଛି ତା ଆଗେ ଆଗେ ।

ସାରା ଦିନଟା ଯାକ ଖରା ତାତିରେ ଦଉଡ଼ି ହରିଣଟାକୁ ଧରି ନ ପାରିବାରୁ ମନଟା ତାଙ୍କର ଛଟପଟ ହୋଇ ଉଠିଲା । ହରିଣଟା ମଧ୍ୟ ପଳାଇ ନ ଯାଇ ଖାଲି ତା ଆଗେ ଆଗେ ବାରମ୍ବାର ଦେଖା ଦେଉଥାଏ । ଏ ଘଟଣା ଦେଖି ମଚ୍ଛିନ୍ଦ୍ର ଅତି ବିରକ୍ତ ହୋଇ ଭାବିଲେ ମାରିଦେବି ।

ଏଥର ଭାବି ଗୋଟିଏ ବିଷମଖା ତୀକ୍ଷ୍ଣ ଶର ପ୍ରୟୋଗ କଲେ । ସେ ଶର ବାଜିଲା ଯାଇ ହରିଣର ପିଠିରେ । ରକ୍ତଧାରା ଛୁଟିଲା । ତଳେ ପଡ଼ିଲା ମାତ୍ରେ ସେ ରକ୍ତଗୁଡ଼ାକ ସୁନା ହୋଇ ଯାଉଥାଏ । ଏ କଥା ଦେଖି ମଚ୍ଛିନ୍ଦ୍ର ଆହୁରି ଆଶ୍ଚର୍ଯ୍ୟ ହୋଇଗଲେ ।

ଘଟଣା କଣ ଜାଣିବା ପାଇଁ ପ୍ରବଳ ଇଚ୍ଛା ହେବାରୁ ଆଉ ଆଗକୁ ବଢିଲେ ନାହିଁ । ଶୀଘ୍ର ଘୋଡ଼ା ଉପରୁ ଓହ୍ଲାଇ ସେ ସୁନା ଗୁଡ଼ିକୁ ଦେଖିବାକୁ ଲାଗିଲେ ।

ଆହୁରି ଆଶ୍ଚର୍ଯ୍ୟ ହାତରେ ଧରିବାମାତ୍ରେ ସୁନା ଗୁଡ଼ିକ ଗୋଲାପ ଫୁଲରେ ପରିଣତ ହୋଇଥାଏ । ମଚ୍ଛିନ୍ଦ ବି ଲକ୍ଷ କରିନେଲା ସୁନା ଧରି ଦେଖିଲା ଯେ ଗୁଣ୍ଡଟା ସୁନାର ଗୋଲାପ ହୋଇ ଯାଇଛି । ତେଣୁ ଭାବିଲା—ଏ ହରିଣଟା ବୋଧହୁଏ ମାୟା ହରିଣ । ଯାହା ହେଉ ତାକୁ ମାରିବାକୁ ହେବ ।

ସୁନାର ଗୋଲାପ ଗୁଡ଼ିକ ଜାମା ପକେଟ୍‌ରେ ରଖି ପୁନର୍ବାର କସି ଦଉଡ଼ିବାକୁ ଆରମ୍ଭ କଲା । ହରିଣ ବି ପଳାଇଲା । ପୂର୍ବଭଳି ତା ଆଗେ ଆଗେ ଅଛି । ଶରଟା ପିଠିରେ ଲାଗିଛି । ଦହେଁ ଗୋଡ଼ିଆ ଗୋଡ଼ ହୋଇ ଫୁଲସଞ୍ଜ ବେଳକୁ ପହଞ୍ଚିଲେ ଗୋଟାଏ ଖୋଲା ପଡ଼ିଆ ଉପରେ ।

ପଡ଼ିଆ ମଝିରେ ଆକାଶଚୁମ୍ବି ଗୋଟାଏ ବିଶାଳ ପଥରର ଖୁଣ୍ଟ । ମୋଟା ଯେମିତି ଉଚ୍ଚ ବି ସେମିତି । ଅଜଣା ଲୋକ ହଠାତ୍ ତାକୁ ଦେଖିଲେ ଡରି ଯିବାର କଥା । ହରିଣଟା ଯାଇ ସେ ଖୁଣ୍ଟ ପାଖରେ ପହଞ୍ଚିଗଲା । ମଚ୍ଛିନ୍ଦ୍ର ଯାଇ ତା ପାଖରେ ପହଞ୍ଚିଲା ବେଳକୁ ଦେଖିଲା ଉଡ଼ାଜାହାଜ ହଠାତ୍ ଯେମିତି ମାଟି ଛାଡ଼ି ଉପରକୁ ଉଠେ, ସେମିତି ହରିଣଟାର ଗୋଡ଼ ଭୂଇଁ ଉପରୁ ଛାଡ଼ିଗଲା ଓ ଧୀରେ ଧୀରେ ସେ ଉପର ଆଡ଼କୁ ଉଡ଼ିଲା ।

ମଚ୍ଛିନ୍ଦ୍ରର ଆଖି ସ୍ଥିର ହେଲା । ଖୁଣ୍ଟ ମୂଳେ ଠିଆ ହୋଇ ଜାବଙ୍କ ଭଳି ଅନାଇ ରହିଲା ହରିଣ ଆଡ଼େ ।

କ୍ରମେ କ୍ରମେ ହରିଣଟି ଅଦୃଶ୍ୟ ହୋଇଯିବା ମାତ୍ରେ ଘଡ଼ଘଡ଼ ଶବ୍ଦ କରି ଖୁଣ୍ଟଟା ପଶିଗଲା ପାତାଳ ଭିତରକୁ ।

ମଚ୍ଛିନ୍ଦ୍ର ହାବା ହୋଇ ଅନାଇ ଥାଏ । ମନ ଭିତରେ ହେତବେଳକୁ ତାର ଝଡ଼ ତୋଫାନ ସବୁ ଛୁଟିଛି । ଦିନ ଯାଇ ରାତି ଆସିଲାଣି । ଗୋଟାଏ ମାୟା ପଛରେ ଗୋଡ଼ାଇ ସେ ଯେ କେତେ ବାଟ ଆସିଛି, ତାର ଠିକଣା ନାହିଁ । ବର୍ତ୍ତମାନ ସେ

ଯିବ ବୁଝାଡ଼େ, କରିବ କ'ଣ କିଛି ଠିକ୍ କରି ପାରୁନି । ଅଦ୍ଭୁତ ହରିଣ ଓ ଅଦ୍ଭୁତ ସ୍ଥାନର ଅଦ୍ଭୁତ ଘଟଣା କଥା ଭାବିଲା ବେଳକୁ ମୁଣ୍ଡ ଘୁରି ଯାଉଛି । ଏମିତି ବେଳେ ପଛରୁ କାହାର କୋମଳସ୍ପର୍ଶ ଅନୁଭବ କରି, ବୁଲି ଅନାଇ ଦେଲା ।

ଷୋଳ ବର୍ଷିୟା ରମଣୀ ଜଣେ ହସ ହସ ମୁହଁରେ ପାଖକୁ ଲାଗି ଠିଆ ହୋଇଛି । ଦେହ ମୁଣ୍ଡରେ ଅପୂର୍ବ ଜ୍ୟୋତି, ସୁଗୋଲ ସୁଠାମ ମୁହଁ । ଚମ୍ପା ଫୁଲ ପରି ବର୍ଣ୍ଣ । ମୋଟ ଉପରେ କହିବାକୁ ଗଲେ ସେ ଜଣେ ସୁନ୍ଦରୀ ମଣ୍ଡଳର-ରାଣୀ ।

ରମଣୀକୁ ଦେଖି ମଚ୍ଛିନ୍ଦ୍ର ଆହୁରି ଆଶ୍ଚର୍ଯ୍ୟ ହୋଇଗଲା । ଏ ଭୀଷଣ ଜଙ୍ଗଲରେ ଏ କିଏ ଆସିଲା କେଉଁଠୁ ? ଏହି କଥା ଭାବୁଛି । ଏମିତି ବେଳେ ଜଙ୍ଗଲର ନୀରବତା ଭଙ୍ଗ କରି ରମଣୀ ଜଣକ କହିଲା—ଆସ ରାଜପୁତ୍ର ! ତୁମପାଇଁ ଆମ କୁମାରୀ ଅପେକ୍ଷା କରି ବସିଛନ୍ତି ।

ମଚ୍ଛିନ୍ଦ୍ର ପଚାରିଲା—କୁମାରୀ କିଏ ?

କହିଲା—ପରିଚୟ ଦେବାକୁ ତାଙ୍କ ମନା ଅଛି । ତେଣୁ ମୁଁ କିଛି କହି ପାରିବିନି । ତୁମେ ମୋ ସଙ୍ଗରେ ତାଙ୍କ ପାଖକୁ ଚାଲ । ବାଟେ ତାଙ୍କ ପରିଚୟ ହୋଇଯିବ ସେ ।

ମଚ୍ଛିନ୍ଦ୍ର ପଚାରିଲା—ଏଇଟା କେଉଁ ସ୍ଥାନ ?

ରମଣୀ କହିଲା—ଏ ହେଉଛି ମାୟାପୁରୀ । ଯକ୍ଷ-ରାଣୀ ମାୟା ଦେବୀ ବହୁ ଯୁଗ ଧରି ଏଠାରେ ରାଜତ୍ୱ କରୁଥିଲେ । ତାଙ୍କର ଅମଳରୁ ଆମ୍ଭେମାନେ ଏଠାରେ ରହି ଯାଇଛୁ । ତୁମେ ଆଉ କିଛି ଜାଣିବାକୁ ଇଚ୍ଛା କରନା । ଯେତେ ଶୀଘ୍ର ପାରୁଛ ମୋ ପଛେ ପଛେ ଚାଲିଆସ । ଟିକିଏ ବିଳମ୍ବ କଲେ ଘୋର ବିପଦରେ ପଡ଼ିବାକୁ ହେବ ।

କୁମାର ପ୍ରଥମ ପ୍ରଥମେ ଟିକିଏ ଥକ୍କା ମକ୍କା ହୋଇ ଭାବୁଥିଲେ—ଯିବେ କି ନଯିବେ। ପରେ ପୁଣି ମନେ ମନେ ଅନେକ ଭାବଚିନ୍ତା ସ୍ଥିର କଲେ—ଯେତେବେଳେ ଆସିଛି' ସ୍ଥାନଟାର ମାହାତ୍ମ୍ୟ ନ ବୁଝି ଫେରିଯିବା ଉଚିତ ହେବନି। ଏଣୁ ସେ ରମଣୀ ସଙ୍ଗେ ଯିବା କଥା ସ୍ଥିର କରି ପଚାରିଲେ—ଘୋଡ଼ାଟାକୁ କେଉଁଠି ରଖିବି ?

ରମଣୀ କହିଲେ—ସାଙ୍ଗରେ ନେଇ ଆସ।

ତା ପରେ ଦୁହେଁ ସାଥି ହୋଇ ଯିବାକୁ ଆରମ୍ଭ କଲେ। ଖୁଣ୍ଟଟା ଯେଉଁଠି ତଳକୁ ଦବି ଯାଇଥିଲା ସେଇବାଟେ ଦେଖାଗଲା ଗୋଟାଏ ଅନ୍ଧାରିଆ ଗୋହିରୀ। କିଛିଦୂର ଆଗେଇ ଯିବା ପରେ ପ୍ରଶସ୍ତ ରାଜପଥ। ପଥର ଦୁଇ ପାର୍ଶ୍ୱରେ ନାନା ପ୍ରକାର ଫୁଲ ଗଛ ଲଗିଛି। ଫୁଟା ଫୁଲର ମହକରେ ମନପ୍ରାଣ ପୂରି ଉଠୁଥାଏ। ନାନା ଜାତିର ଭଅଁର ଓ ମହୁମାଛି ଆସି ଫୁଲ ମାନଙ୍କରୁ ମହୁ ପିଉଥାନ୍ତି। ପ୍ରତି ଶଏ ହାତ ଦୂରତାରେ ଥାଏ ଗୋଟିଏ ଲେଖାଏଁ ସୁନା ଚଉଁରା। ଚଉଁରା ଉପରେ ବସିଥାନ୍ତି ଗୋଟିଏ ଶୁଆ ଆଉ ଗୋଟିଏ ସାରୀ।

କିଛି ଦୂର ଗଲାପରେ ପଥର ଦୁଇ ପାର୍ଶ୍ୱରେ ଯୋଡ଼ାଏ ବଡ଼ ପୋଖରୀ। ପାଣି କାଚକେନ୍ଦୁ ପରି ଭାରି ନିର୍ମଳ। ଗୋଟିକରେ ଫୁଟିଛି ରକ୍ତ ପଦ୍ମ, ଅନ୍ୟଟିରେ ନୀଳପଦ୍ମ। ତା ପରେ ଗୋଟିଏ ଶ୍ରେଷ୍ଠ ଦୁର୍ଗ।

ଦୁର୍ଗର କାନ୍ଥ ବାଡ଼ ସବୁ ସୁନା, ରୁପା, ପୋହଳା ଓ ମଣି ମୁକ୍ତାରେ ତିଆରି। ଖୁଣ୍ଟ ସବୁ ହୀରା ନୀଳା ଓ ବୈଦୁର୍ଯ୍ୟ ଇତ୍ୟାଦି ମୂଲ୍ୟବାନ ପଥରରେ। ଛାତ କଥା ବା କ'ଣ କହିବି। କେତେ ପ୍ରକାର କାମ ଦାମ ଖାଲି କାରୁକାର୍ଯ୍ୟ ଭରା। ଯୋଉ ବିଜ୍ଞାଣୀମାନେ ସେ ଦୁର୍ଗ ତୋଳିଛନ୍ତି, ସେମାନଙ୍କୁ ଧନ୍ୟ।

ନାମ ତାର ମାୟାପୁରୀ । ଦେଖିଲେ ଆଖି ଝଟକିଯାଏ । ମୁଣ୍ଡ ଭିତରେ ଭାବନାର ଝଡ଼ ଉଠେ । ଦର୍ଶକ ସ୍ୱର୍ଗରେ ଅଛି ନା ମର୍ତ୍ତ୍ୟରେ ଅଛି କିଛି ବୁଝି ପାରେନ । ଏମିତିକି ଗୋଟିଏ ସ୍ଥାନରେ ପହଞ୍ଚି ରାଜକୁମାର ଓ ମନ୍ତ୍ରିପୁତ୍ର ଏକ ପ୍ରକାର ବୋକା ପାଲଟି ଯାଇଛନ୍ତି । ହେଲେ ଧୈର୍ଯ୍ୟ ହରାଇନ । ଘଟଣାଟି ଜାଣିବାପାଇଁ ପ୍ରବଳ ସାହସରେ ଚାଲିଛନ୍ତି ସେଇ ରମଣୀ ସଙ୍ଗେ ।

ରମଣୀ ଧୀରେ ଧୀରେ ଯାଇ ସେଇ ମନୋହର ଦୁର୍ଗ ଭିତରେ ପହଞ୍ଚିଲା । ମନ୍ତ୍ରିପୁତ୍ରକୁ ଗୋଟିଏ ସୁ-ସଜ୍ଜିତ ଗୃହରେ ବସାଇ ଦେଇ କହିଲା—ବସିଥାଅ, ମୁଁ ଯାଉଛି କୁମାରୀଙ୍କ ପାଖକୁ । ତାଙ୍କଠାରୁ ଆଜ୍ଞା ପାଇଲେ ତୁମକୁ ନେଇଯିବି ।

କୁମାର ମନ୍ତ୍ରିପୁତ୍ର ଯିଏ ଚନ୍ଦ୍ର ପ୍ରତିମା ପରି ଗୋଟାଏ ସୋଫା ଉପରେ ବସିଛି । ମନର ଅନ୍ତ ସମୁଦ୍ର ତରଙ୍ଗ ପରି ଖାଲି ଉଠୁ ପଡ଼ୁ ଅବସ୍ଥାରେ । କୌଣସି କଥାକୁ ଭୟ ନାହିଁ । ଯଦିବା ଜେତେବେଳେ ମୃତ୍ୟୁ ଭୟ ଆସି ଆଗରେ ଦେଖାଦିଏ, ତେବେ ସୁଦ୍ଧା ସେ ଅଟଳ । ଦୈବାତ ଆସି ଗୋଟାଏ ଅଜଣା ରାଜ୍ୟରେ ଗୋଡ଼ ଦେଇଛି । ସେଠାକାର ରହସ୍ୟ ସମ୍ବନ୍ଧେ କିଛି ନ ଜାଣି ନ ଶୁଣି ଫେରିଯିବାଟା ମନୁଷ୍ୟର କାମ ନୁହେଁ । ତେଣୁ ସେ ଏକ ଲକ୍ଷ୍ୟରେ ବସି ରହିଲା ସ୍ଥାନଟାର ରହସ୍ୟ ବୁଝି ଯିବାପାଇଁ ।

ଘଡ଼ିପରେ ଘଡ଼ି କଟିବାକୁ ଲାଗିଲା । ତେବେ ସୁଦ୍ଧା କେହି ଆସିବାର ଦେଖା ଗଲାନି କି ବସାଇ ନେଇ ଯାଇଥିବା ରମଣୀ ଜଣକ ମଧ୍ୟ ଫେରିଲାନି । ମନଟା ଖାଲି ଚଙ୍ଗ ଚଙ୍ଗ ହୋଇ ଉଠିଲାଣି । କଣ କରିବ, କାହାକୁ ପଚାରିବ କିଛି ସ୍ଥିର କରିପାରୁ ନଥାଏ । ଏମିତିବେଳେ ଆଉଜଣେ ରମଣୀ ହାତରେ ଖାଦ୍ୟପାତ୍ର ଘେନି ପହଞ୍ଚିଲା ।

ଏ ଜଣକ ପୂର୍ବୋକ୍ତ ରମଣୀ ଅପେକ୍ଷା ସୁନ୍ଦରୀ । ଆଖିରୁ ମୋହିନୀ ସମୁଦ୍ରର ଯୁଆର ଉଠୁଛି । ମୁଖରେ ଶତ ଶରତ୍ ଚନ୍ଦ୍ରମାର ଜ୍ୟୋତ୍ସ୍ନା । କଥା କହିଲେ ବୀଣାର ତାନ ବି ଆପେ ଆପେ ହାର ମାନିବ । ଏଭଳି ଆଉ ଗୋଟିଏ ସୁନ୍ଦରୀକୁ ଦେଖି କୁମାର ମହେନ୍ଦ୍ର ମନେ କଲେ ସ୍ୱପ୍ନ ରାଜ୍ୟରେ ବୁଲୁଛନ୍ତି । ତେଣୁ ବାସ୍ତବ ରାଜ୍ୟରୁ ନିଜର ସତ୍ତା ହରାଇ ବାଲୁ ବାଲୁ କରି ତା ମୁହଁକୁ ଅନାଇ ରହିଲେ ।

ରମଣୀଟି ହସ ହସ ମୁଖରେ କହିଲା—ଆସ ରାଜକୁମାର, ତୁମକୁ ବହୁତ କ୍ଷୁଧା ହେଉଛି । କିଛିତ ପାନାହାର କରି ନିଅ । ତା ପରେ ଯାଇ ଅନ୍ୟକଥା । ଏହା କହି ସେଠା ସ୍ଥାନରେ ଖାଦ୍ୟ ଓ ପାନୀୟ ରଖି ହାତ ମୁହଁ ଧୋଇବା ପାଇଁ ଅନୁରୋଧ କଲା ।

କୁମାର ମହେନ୍ଦ୍ର ସେତେବେଳକୁ ପ୍ରକୃତରେ ଭାରି ଭୋକିଲା ହୋଇ ଉଠୁଥିଲେ । ତେଣୁ ବେଶି କିଛି ପ୍ରତିବାଦ ନ କରି କେବଳ ମନ୍ଦ କହିଲେ—ଜଣେ ଅପରିଚିତ ପ୍ରତି ଏତେ ସମାଦର ମାନେ କ'ଣ ବୁଝି ପାରୁନାହିଁ ?

ଉତ୍ତର ମିଳିଲା—ମାନେ ବୁଝିବାକୁ ହେଲେ ଅଭିଧାନ ଲୋଡ଼ା । ମୁଁ ଖାଲି ସଂକ୍ଷେପରେ ଏତିକି କହିପାରେ ଯେ, ଜଣେ ନବାଗତ ଅତିଥି ପ୍ରତି ଦେଶ ଦୁନିଆ ମନୁଷ୍ୟଙ୍କର କର୍ତ୍ତବ୍ୟ ସମାଦର ଦେଖାଇବା । ତେଣୁ କଥାଟାରେ ଆଉ ନୂତନତା କଣ ଅଛି ।

କୁମାର ନିଜ କଥାର ଯଥାର୍ଥ ଉତ୍ତର ପାଇ ଆଉ କିଛି କ'ଣ କହିଲେନି । ହାତ ମୁହଁ ଧୋଇ ଖାଇ ବସିଲେ । ଦିବ୍ୟ ଭୋଜନ । ଘୃତ ପକ୍ୱ ଅନ୍ନ ଆଦି ସାମଗ୍ରୀ ସଙ୍ଗେ ଅନ୍ୟ ବ୍ୟଞ୍ଜନ ବି ଅଛି । ନିଜ ରାଜବାଟୀର ଖାଦ୍ୟ ଅପେକ୍ଷା ଶତଗୁଣ ରୁଚିକର ଖାଦ୍ୟ । ଖାଇବାକୁ ଇଚ୍ଛା ହେଲା । ତୃପ୍ତି ବି

ଲାଗିଲା । ରମଣୀଟି ପାଖରେ ବସି ପଙ୍ଖା କରୁଥାଏ । ଏଣୁ ତେଣୁ ପ୍ରସଙ୍ଗ ପକାଇ ମନଟାକୁ ଆନମାନକର କେଉଥାଏ ।

ଖିଆ ପିଆ ସରିଗଲା । କୁମାର ହାତ ମୁହଁ ଧୋଇ ଅଚାଇଲା ବେଳକୁ ଖଙ୍ଗ୍ରୁଡ଼ ବାସନ ଗୁଡ଼ିକୁ ନେଇ ରମଣୀଟି ଚ୍ଲିଲ ଯାଇଛି । କୁମାର ବସିଥିବା ଶୋଫା ଉପରେ ରଖା ଯାଇଛି ତାମ୍ବୁଳର ଗୋଟିଏ ପ୍ଲେଟ ବଟା ! କୁମାର ସେ ବଟାରୁ ତାମ୍ବୁଳ ଆଣି ଖାଇଲେ । ଅଳ୍ପ କେତେ ମୁହୂର୍ତ୍ତ ବସିବା ପରେ ପୁନର୍ବାର ପୂର୍ବୋକ୍ତ ରମଣୀଟି ଆସି କହିଲା ଆସ କୁମାର ! ଆମ ସଖି ଡାକୁଛନ୍ତି ଦେଖା କରିବାକୁ ।

କୁମାର ତା କଥାରେ କୌଣସି ପ୍ରକାର ବିରୁକ୍ତି ନ କରି ଯିବାକୁ ବାହାରିବାରୁ ରମଣୀଟି ଆଗେ ଆଗେ ବାଟ କଢ଼ାଇଲା । କେତୋଟି ମାତ୍ର କକ୍ଷ ଅତିକ୍ରମ କଲାପରେ ପଡ଼ିଲା ଗୋଟିଏ ମାର୍ବଲ ପଥରରେ ନିର୍ମାଣ ହୋଇଥିବା କକ୍ଷ ।

କକ୍ଷଟିର କାରୁକାର୍ଯ୍ୟ ଖୁବ୍ ଉଚ୍ଚ ଧରଣର । ଅପୂର୍ବ କାହାଣୀ ତାକୁ ଏପରି ଭାବେ ଗଢ଼ିଛି ଯେ ଦେଖିଲେ ଲୋକ ନିଶ୍ଚୟ ତାଜୁବ୍ ହେବାର କଥା ।

କକ୍ଷଟି ସମ୍ପୂର୍ଣ୍ଣ ଜଳ ପରୀଖା ମଧ୍ୟରେ ବୁଡ଼ି ରହିଛି । ଘର ପାଖରେ କହ୍ଲତ ମାଛ କଇଁଛ ଖେଳ କୁଳ କରୁ ଥାଆନ୍ତି । ସେ ସବୁ କକ୍ଷ ଭିତରେ ଥିବା ଲୋକମାନଙ୍କୁ ଦେଖାଯାଉଥାଏ । ସେହି କକ୍ଷର ନାମ—ସଲିଳ ବିହାର ।

ରମଣୀ ଜଣକ କୁମାରକୁ ନେଇ ସେହି କକ୍ଷରେ ପହଞ୍ଚିଲା । ସାତ ସଖୀ ପରିବେଷ୍ଟିତା—ଅପୂର୍ବ ସୁନ୍ଦରୀ କୁମାରୀଟିଏ ଅର୍ଘ୍ୟସ୍ଥାଳ ନେଇ ବନ୍ଦାପନା କରୁ କରୁ କହିଲା—ମୋର ଆଜ ପରମଭାଗ୍ୟ ରାଜପୁତ୍ର ! ତା ନ ହେଲେ ତୁମ ପାଦ ଏଠାରେ ପଡ଼ ନ ଥାନ୍ତା ।

ମନ୍ଦ୍ରିନ୍ଦ୍ର ପଚାରିଲା—ତୁମେ କିଏ ।

କୁମାରୀ କହିଲା—ମୁଁ ଗୋଟିଏ ଯକ୍ଷ କୁମାରୀ । ମା ମୋର ମାୟାଦେବୀ ଏଠାରେ ରାଣୀ ଥିବାରୁ ଏ ମାୟା ପୁରୀଟି ନିର୍ମାଣ କରାଇ ଥିଲେ । ଆମେ ତାଙ୍କର ଥିଲୁ ଦୁଇଟି ମାତ୍ର ଝିଅ । ଗୋଟିକର ନାମ ହେନା ଓ ଆଉ ଗୋଟିକର ନାମ ମୀନା ।

ମଞ୍ଚିନ୍ଦ୍ର ପଚାରିଲା ହେନା କିଏ ?

କୁମାରୀ କହିଲା—ମୋର ବଡ଼ ଭଉଣୀ ନାମ ହେନା । ତିନି ଭୁବନରେ ତାହାର ରୂପବତୀ ତରୁଣୀ ନାହାନ୍ତି କୁମାର ।

ପଚାରିଲା—ତୁମ ନାମ ?

କହିଲେ—ମୋ' ନାମ "ମୀନା"

ପଚାରିଲେ—ହେନା ବର୍ତ୍ତମାନ କେଉଁଠାରେ ?

କହିଲା—ସାତ ସମୁଦ୍ର ତଳେ ଅଛି ଅତଳ ମହାଦେଶ । ସେ ମହାଦେଶ ମଧ୍ୟରେ ଅଛି 'କୁଣ୍ଡଳ ନଗରୀ' ବୋଲି ଗୋଟିଏ ଭୟଙ୍କର ପର୍ବତ । ସେହି ପର୍ବତର ରାଜା କୁଣ୍ଡଳ କେତୁ ଦୈତ୍ୟ ଏଗାର ବର୍ଷ ତଳେ ହେନା କୁମାରୀକି ଧରିନେଇ ବନ୍ଦୀକରି ରଖିଛି ।

ପଚାରିଲା—କାରଣ ?

କହିଲା—ତାର ଇଚ୍ଛା ଆମ ଦୁ' ଭଉଣୀଙ୍କୁ ବାହାହୋଇ ମାୟାପୁରୀର ଗୁପ୍ତ ଧନାଗାରର ମାଲିକ ହେବାକୁ ।

ପଚାରିଲା—ହେନାକୁ ନେଇ ଗଲା, ତୁମକୁ ନ ନେଲା କାହିଁକି ?

କହିଲା—ମୋତେ ନ ନେଲେ ବି ମୁଁ ତାର ବନ୍ଦୀ ।

ପଚାରିଲା—କିପରି

କହିଲା—ମୋ ଅପେକ୍ଷା ହେନାକୁ ସେ ଭାରି ଭଲପାଏ । ତେଣୁ ତାକୁ ନେଇ ତା ପାଖରେ ରଖିଛି । ମୋତେ ଏଠାରେ ବନ୍ଦୀ ଅବସ୍ଥାରେ ରଖି ପ୍ରତି ସପ୍ତାହରେ ଥରେ ଦେଖିବାକୁ

ଆସେ । ଯେଉଁ ଧନ ଆସେ ସେ ଧନ ମୋ ଉପରେ ବହୁତ ଅତ୍ୟାଗ୍ଭର କରେ ।

ପଗ୍ଭରଲେ—ତେବେ କ'ଣ ତାଙ୍କୁ ବନ୍ଧ ହେଲେଣି ।

କହିଲା—ତେବେ ତାଙ୍କୁ ବନ୍ଧ ହୋଇନ କ ହେବ ନାହିଁ । ବରଂ ଦୁଃଖ କଷ୍ଟରେ ଜଳ ଜଳ ହୋଇ ପେଶି ହୋଇ ମରିବ; କନ୍ତୁ ଗୋଟାଏ ହୀନ ଅସୁରକୁ ବନ୍ଧ ହେବନ । ଦୁହେଁ ଏହିପରି କଥାବାର୍ତ୍ତା ହେଉଛନ୍ତି; ଏମିତି ବେଳେ ଦୁର୍ଗ ଭିତରେ ଶୁଣାଗଲା ଗୋଟାଏ ପ୍ରଚଣ୍ଡ ଶବ୍ଦ । ସେ ଶବ୍ଦ ଶୁଣି ସମସ୍ତେ ଚମକି ପଡ଼ିଲେ ।

ସେ ଧନ କୁଣ୍ଡଳ କେଶୁ ଅସୁରର ଆସିବା ପାଳି ନ ଥିଲା । ତେଣୁ ମୀନାକୁମାରୀ ମନ୍ତ୍ରିପୁତ୍ର ସଙ୍ଗେ ନାଲିପୁରେ କଥାବାର୍ତ୍ତା କରୁଥାଏ । ହଠାତ୍ ଏ ଭଳି ଦୁର୍ଘଟଣା ଘଟିବ ବୋଲି କେହି ଅନୁମାନ କରି ନ ଥାନ୍ତି । ଅସୁରର ଗତି ସେମାନଙ୍କୁ କଣ ବା ଜଣା !

କୁଣ୍ଡଳ କେଶୁ ଦୈତ୍ୟ ପାଖରେ ଥାଏ ଗୋଟିଏ ସ୍ଫଟିକ ଘଣ୍ଟା । ସେ ଘଣ୍ଟାରେ ଯେଉଁ କାଚ ଲଗିଛି ସେଥିରେ ଅନାଇ ତିନିପୁର କଥା ଦେଖିପାରେ । ତେଣୁ କେଉଁଠି କଣ ଘଟୁଛି, ସେ କଥାଜାଣିବା ତା ପକ୍ଷରେ ଅସମ୍ଭବ ନୁହେଁ ।

ଅସୁର ଆଜ ହେନା କୁମାରୀକ ଗୁଡ଼ାଏ ମାଡ଼ ଫାଡ଼ ଦେଇ ଝରଣ୍ଡରେ ଆସି ଶୋଇଛି, ହଠାତ୍ ମୀନାକୁମାରୀ କଥା ମନେ ପଡ଼ିଗଲା । ବର୍ତ୍ତମାନ ସେ କଣ କରୁଛି ଓ କିପରି ଅଛି ଜାଣିବା ପାଇଁ ସ୍ଫଟିକ ଘଣ୍ଟାକୁ ଅନାଇ ଦେଇ ଦେଖି ପାରିଲା—ଜଣେ ରାଜପୁତ୍ରକୁ ଅଣାଇ ତା ସଙ୍ଗେ କଥା ବାର୍ତ୍ତା ହେଉଛନ୍ତି । ହଠାତ୍ ତା ଆଖି ଉଠିଲା ତାଙ୍କ ଉପରକୁ । ରାଗରେ ରକ୍ତ ଗରମ ହୋଇ ଉଠିଲା । ଆଉ ଆଗ ପଛ କିଛି ବିଚାର ନ କରି ଚଢ଼େଇ ପରି ଉଡ଼ିଗଲା ଶୁନ୍‌କାଶୁନ୍ ।

ପହଞ୍ଚିଗଲା ମାୟାପୁରୀରେ । ମୀନା ସଙ୍ଗେ କଥାବାର୍ତ୍ତା ହେଉଥିବା ମନ୍ଦିରର ଗୋଡ଼ ଆଡ଼ୁ ଧରି ବୁଲାଇ ବୁଲାଇ ଫିଙ୍ଗି ଦେଲା ଉପରକୁ ।

ମୀନା ଓ ସଖୀମାନଙ୍କ ଆଖି ବୁଜି ହୋଇଗଲା । ସ୍ୱପ୍ନରେ କିଛି କଷ୍ଟ ନ ପାଉଥିଲେ ମଧ୍ୟ ଦୁଃଖରେ ଆଖିରୁ ଛୁଟିଲା ଅଶ୍ରୁର ଝରଣା । ନିଷ୍ଠୁର ଦୈତ୍ୟର ମନ କ'ଣ ହେଥିରେ ତରଳିଯିବ ? ଛୁଃ । ତସ୍ମା ପରିବର୍ତ୍ତେ ବରଂ କ୍ରୋଧର ମାତ୍ରା ଦେଖାଗଲା ବେଶି ।

ଦୈତ୍ୟ ଗର୍ଜନ କରି ମୀନା ଓ ତାର ସଖୀମାନଙ୍କୁ ଝୁଲୁକରେ ଗୁଡ଼ାଏ ପିଟିଲା । ତା'ପରେ କହିଲା—ଦେଖ୍ ମୀନା ! ତୁମ ଢ଼' ଭଉଣୀଙ୍କ ଲାଗି ମୋର ଯୌବନଟା ମଧ୍ୟ ବ୍ୟର୍ଥ ହୋଇଗଲା । ତେବେ ବି ତୁମେ ମୋର ହେବାକୁ ମଙ୍ଗିଲ ନାହିଁ । ପୁଣି ଭିତରେ ଭିତରେ ଆଉ ପୁରୁଷ ଆଣି ମନ କଲୁଣି ପଳାଇ ଯିବାକୁ । ମାତ୍ର ମନେ ରଖିଥା, ମୋ ଅଜ୍ଞାତରେ ତୁ ଯୋଉଠି ଯାହା କରିବୁ ସେ କଥା ମୁଁ ବରାବର ଜାଣିପାରିବ । ତୋ ଭଉଣୀ କଥାରେ ବିଶ୍ୱାସ ରଖି ଦୀର୍ଘ ଏଗାର ବର୍ଷ ଅପେକ୍ଷା କରି ରହିଛି, ଆଉ ବର୍ଷଟା ମାତ୍ର ବାକି । ତାପରେ ହିଁ ମୋତେ ବାଧା ଦେବାକୁ ପୁଣି କିଛି ଆଳ ବାହାର କରିବୁ, ତେବେ ସେ କଥା ମୋଟେ ଶୁଣିବିନି । ଧର୍ମକୁ ଲଙ୍ଘି ବଳାତ୍କାରରେ ତୁମକୁ ଆପଣାର କରିନେବି । ଥରେ ଦେହ ଓ ମନ ଏକ ହୋଇଗଲା ପରେ ତୁମେ ମର ବା ବଞ୍ଚ, ସେଥିପାଇଁ ମୋର କିଛି ଚିନ୍ତା ନାହିଁ ।

ସଖୀମାନଙ୍କୁ ତାର ଧମକ ଦେଇ କହିଲା ଦେଖ, ତୁମେ-ମାନେ ଏଣିକି ସାବଧାନରେ ମୀନାକୁ ଜଗାରଖା ନ କଲେ ମୁଁ ତୁମ ମୁହଁ ଛିଣ୍ଡିବି । ଚୋଟିକ ଗୋଟି ନେଇ ଦାବାନଳରେ ପୋଡ଼ି ଝୁଙ୍ଗୁଆ ପୋଡ଼ା ଦେବାଇଲା ପରି ଦେବାଇ ଦେବି, ଏଥି ପ୍ରତି ସାବଧାନ ହୁଅ । କୌଣସି ଅଚିହ୍ନା ଲୋକ ଆସିଲେ

ତାକୁ ମୋଟେ ଭିତରକୁ ଛାଡ଼ିବନି । ଯଦି କେହି ବଳାତ୍କାର କରି ପଶିବାକୁ ଇଚ୍ଛାକରେ ତା' ହେଲେ—ମନେରଖ ବାଗଦା ମଝି ପୋଖରୀ ପାଖରେ ଥିବା ବାଉଁଶଟାକୁ ତିନଥର ହଲାଇଦେଲେ ମୁଁ ଜାଣି ପାରିବି ।

ସଖୀମାନେ ତା କଥାରେ ହଁ ଭରିଲେ ।

ଅସୁର ପଚାରିଲା—ଯଦି ମୋ କଥା ଅମାନ୍ୟ କର ।

କହିଲେ—ତେଣିକି ତୁମେ ଯେଉଁ ଦଣ୍ଡ ଦେବାର କଥା ଦେଇ ପାରିବ ।

ବେଶ୍ ଏତିକିରେ ଅସୁର ଚାଲିଗଲା । ମୀନା କୁମାରୀର ଆଖିରୁ ଆଉ ଲୁହ ଶୁଖିଲାନି । ସୁକୁମାର ଓ ସୁଶ୍ରୀ ସଙ୍କାଗ୍ରୁଅଟିର ଦୁର୍ଦ୍ଦଶା କଥା ଭାବି ସେ ଥରକୁ ଥର ଖାଲି ମୂର୍ଚ୍ଛା ଯିବାକୁ ଲାଗିଲା । ସଖୀମାନେ ଯେତେ ବୁଝାଇଲେ ମୋଟେ ବୁଝିଲାନି ।

ଅସୁର ମଚ୍ଛିନ୍ଦ୍ର ବସ୍ତୁକୁ ଫୋପାଡ଼ି ଦେଲାବେଳେ ଗୋଟାଏ ବଡ଼ ଇଗଲ ପକ୍ଷୀ ଶିକାର କରିବା ପାଇଁ ଉପରେ ଉଡ଼ୁଥିଲା । ମଣିଷଟା ବଲ୍‌ପରି ଉପରକୁ ଉଠୁଥିବାରୁ ଖାଦ୍ୟ ମନେକରି ଥଣ୍ଟ ଓ ନଖରେ ଧରି ନେଲା ଝଡ଼ ଭଳି ପରି । ତାପରେ ମନ ଖୁସିରେ ଉଡ଼ି ଉଡ଼ିକା ଚାଲିଗଲା ନିଜ ବସାକୁ । ବସା ତାର ଗ୍ରୀଷ୍ମଗିରି ପର୍ବତର ଗୋଟିଏ ଖୋଲ ଭିତରେ । ସେଠି ପହଞ୍ଚି ବସିଲା ଖାଇବ ବୋଲି । କଥାରେ ଅଛି—ଦେବ ଧର୍ମ ଯାକୁ ପାଞ୍ଚଇ ଭଲ

ତାହାର ବା କିଏ କରିବ ସଲ ।
ଆୟୁଷ ଥିଲେ ପ୍ରାଣୀ ଜଣି ମରଣ
ସୁର ପ୍ରଭୁ କରେ ମଣି ହରଣ
ବନବନ୍ତର କ ଶକ୍ତି
କୋଟି ବିପଦରୁ ଯେବେ ଉଦ୍ଧାରିବେ
ସ୍ୱୟଂ କମଳାଙ୍କ ପତି ।

କୁମାର ମଚ୍ଛିନ୍ଦ୍ର ଖିଏ ସେତେବେଳକୁ ଆଉ ପ୍ରାଣରେ ନଥାଏ । ଇଗଲ ପ୍ରଥମେ ମାଂସ ଖାଇବା ପୂର୍ବରୁ ଅଣ୍ଟାମାତ୍ର ତା'ର ଗୋଟିଏ ଆଖି ଚାଡ଼ି ନେଲା । ତାକୁ କଡ଼ କଡ଼ କରି ଗିଳିବାଇ ବେଳେବେଳକୁ ଦେଖିଲା ଗୋଟାଏ ସମ୍ବର ଦଉଡ଼ି ପଳାଇଛି । ତା ପଛରେ ଗୋଡ଼ାଇଛି ପଶୁରାଜ ସିଂହ ।

ଇଗଲର ସମ୍ବରଟା ଉପରେ ଭାରି ଲୋଭ ହେଲା । ତେଣୁ ସେ ମଚ୍ଛିନ୍ଦ୍ରର ଶବଟାକୁ ସେଠାରେ ପାଇ ଦେଇ ଦଉଡ଼ିଲା ସେଆଡ଼କୁ । ମାତ୍ର ଯୋଗକୁ ବ୍ରହ୍ମା ଖଣ୍ଡେନ । ଇଗଲ ପହଞ୍ଚିଲା-ବେଳକୁ ସିଂହ ତାକୁ ମାଡ଼ିବସିଛି ।

ଇଗଲ କ'ଣ କେବେ ଛାଡ଼େ ? ଭାବିଲା ସିଂହ ଓ ସମ୍ବର ଦୁହିଁଙ୍କି ଝାମ୍ପିବାକୁ । ମାତ୍ର ବଡ଼ୁତ କଷ୍ଟ ହେଲା । ଇଗଲ ବି ଶିକାରୀ, ସିଂହ ବି ଶିକାରୀ । କେହି କାହାକୁ ବଳ ଓ ସାହସରେ କମ୍ ନୁହନ୍ତି । ଇଗଲ ଝାମ୍ପ ମାରିଲାବେଳକୁ ସିଂହ ତା ଗୋଡ଼ ଯୋଡ଼ାକ ଖୁବ୍ ଯୋରରେ ଟାଣି ଧରିଲା । ଦୁହେଁ ତଳେ ପଡ଼ା ପଡ଼ି ହୋଇ ଖୁବ୍‌ଯୁଦ୍ଧ କଲେ । ଡରମଲା ସମ୍ବର ବପୁରା ଏହି ଅବସରରେ ଧୂଷ୍ ଉଡ଼ାଇ ଗୋଟାଏ ଗହଳିଆ ଜଙ୍ଗଲରେ ପଶିଗଲା ।

ଏଣେ ଯୁଦ୍ଧ କରି କରି ଇଗଲ ଓ ସିଂହ ଦୁହିଁଙ୍କି ଦୁହେଁ ମରିଗଲେ ।

ଗୋଟାଏ ବୁଲା ଚଢ଼ାଢାଉ କୁଆଡ଼ୁ ଆସି ମଚ୍ଛିନ୍ଦ୍ରର ଶବଟାକୁ ନେଇ ପଳାଇଗଲା ତା ବସାକୁ ।

ସେ କାଳରେ ଜୀବ ଜନ୍ତୁ ସମସ୍ତେ କଥା କହି ପାରୁଥିଲେ ଯେ, ସବୁବେଳେ ନୁହେଁ, ସେମାନଙ୍କ କଥା ସେହିମାନଙ୍କ ବଂଶ ଛଡ଼ା ଅନ୍ୟ କେହି ବୁଝିପାରନ୍ତି ନାହିଁ ।

ଚଢ଼ା ବାଘର ଗୋଟିଏ ଘରଣା ଓ ଯୋଡ଼ିଏ ଛୁଆ । ଛୁଆ ଯୋଡ଼ିକ ଅଣ୍ଡିରା । ଭାରି କୁନୁମୁନିଆ ହୋଇଥାନ୍ତି । ବସା

ପାଖଆଖ ଲାଗି ଖୁବ୍ ଡିଆଁଡେଇଁ ଦଉଡ଼ା ଧାପଡ଼ା କରୁଥାଆନ୍ତି । ତେଣୁ ବାଘୁଣୀ କୁଆଡ଼େ ଶିକାର କରିବାକୁ ନ ଯାଇ ସବୁବେଳେ ବସାରେ ଥାଏ । ପିଲା ବଚ୍ଚାଙ୍କୁ ଖେଳ କସରତ ଓ ଶିକାର କରିବା କୌଶଳ ଶିଖାଉଥାଏ । ଏକା ଚିତାବାଘ ଯାଏ ଶିକାରକୁ । ନେଇଥାଏ । କୁଆ ବଚ୍ଚାଙ୍କୁ ତା କଲିଜାଟା ଓ ମୁଣ୍ଡର ଦନ୍ତ ଗୁଡ଼ାକ ଖୁଆଇ ଦେବ ବୋଲି ଜିଦ୍‌ଖର କରି ଖୁବ୍ ତରତର ହେଉଥାଏ । ଫଳଟା କିନ୍ତୁ ବିପରୀତ ହେଲା ।

ବାଘ ଶବଟାକୁ ଆଣି ଘରେ ରଖି ଦେଲାରୁ କୁଆଁ ବଚ୍ଚେ ଯାଇ ତାକୁ ଦେଖିଲେ ଓ କାନ୍ଦି କାନ୍ଦି ମାଆକୁ କହିଲେ—ମାଆଲୋ ମା ! ଏଇଟା କ'ଣ ?

ମା' କହିଲା—ଏ ଗୋଟାଏ ମଣିଷ ଶିକାର ।

ପଚାରିଲେ—ମରିଛି ନା ବଞ୍ଚିଛି ?

କହିଲା—ମରିଛି ।

ଏକଥା ଶୁଣି କୁଆ ଏକଜିଦ୍ ଧରି କହିଲେ—ତୁ ଏଇଟାକୁ ବଞ୍ଚାଇ ଦେଲେ ଆମେ ତା ସାଙ୍ଗରେ ଖେଳିବୁ । ତଞ୍ଚଳ ବଞ୍ଚା ।

ଏକଥା ଶୁଣି ବାଘ ବାଘୁଣୀ ବଚ୍ଚେ ପ୍ରମାଦ ଗଣିଲେ । କୁଆ ବଚ୍ଚାଙ୍କ ଉପରେ ବିରକ୍ତ ହେଲେ । ମାତ୍ର ଫଳ କିଛି ହେଲାନି । ତାଙ୍କର ସେଇ ଗୋଟିଏ ଜିଦ୍ । ତାକୁ ବଞ୍ଚାଇ ଦେଲେ ତା ସାଙ୍ଗରେ ଖେଳିବୁ ।

ବାଘ ବହୁତ ବୁଝାଇଲା । ଗାଳି ଦେଲା, ମାଡ଼ ବି ଦେଲା । ମଣିଷ ମାଉଁସ ଭାରି ସୁଆଦ ଲାଗେ । ତାକୁ ଖାଇଲେ ଦେହରେ ଖୁବ୍ ବଳ ହୁଏ । ମୁଣ୍ଡରେ ସୁବୁଦ୍ଧି ପଶେ ଇତ୍ୟାଦି ଯେତେ ଫୁସୁଲେଇଲେ ବି କୁଆ ଭୁଲିଲେନି । ଶେଷକୁ କନ୍ଦାକଟା କରି

କହିଲେ—ତାକୁ ଯେବେ ବଞ୍ଚାଇ ନ ଦେବ, ତେବେ ଆମେ ପଥରରେ ମୁଣ୍ଡ ପିଟି ମରିଯିବୁ ।

ବାଘ ବାଘୁଣୀଙ୍କ ହଲକ ଶୁଖିଗଲା । ଆଚ୍ଛା ଶିକାର ଘରକୁ ଆଣି ଗୋଟାଏ ଅଡ଼ୁଆରେ ପଡ଼ିବାକୁ ହେଲା । ବର୍ତ୍ତମାନ କ'ଣ କରାଯିବ, କାରଣ ତାକୁ ନ ବଞ୍ଚାଇଲେ ଝୁଅ ଦି'ଟା ମରି ଯାଉଛନ୍ତି । ଏହି ସବୁ କଥା ଭାବି ବାଘୁଣୀ ଚଳି ଅମୃତଙ୍କର ଚେର ଆଣିବାକୁ । ବାଘ ଝୁଅଙ୍କୁ ଓ ମୁର୍ଦ୍ଦାରକୁ ଜଗିକରି ବସିଲା ।

ମଚ୍ଛିନ୍ଦ୍ର ରାଏର ଘୋଡାଟି ଗୋଟିଏ ଗଛରେ ବନ୍ଧା ହୋଇଛି । ଭୋକ ଓ ଶୋଷରେ ପ୍ରାଣ ତା'ର କଣ୍ଠାଗତ ହେଲାଣି । ତେବେ ସୁଦ୍ଧା କେହି ଖାଇବାକୁ ନ ଦେବାରୁ ହତାର ରଡ଼ି କରିବାକୁ ଲାଗିଲା । ମୀନାକୁମାରୀ ଗୋଟିଏ ସଖୀକୁ କହିଲା—ସେ ଘୋଡ଼ାଟିକୁ ଶୀଘ୍ର ଖାଇବାକୁ ଦିଅ । ଏ ଘରଦ୍ୱାର ସବୁ ତୁମକୁ ଲାଗିଲା । ମୋ ଉପରେ ଆଉ ଆଶା ରଖି ବନି । ମୁଁ ବାହାରିଲି ମୋ କାମରେ । ଯଦି ବୁଦ୍ଧି ବଳ ଖର୍ଚ୍ଚ କରି ସେ ରାଜପୁଅକୁ ଯମ ହାତରୁ ଆଣି ପାରିବି ତ ଦେଖା ହେବ; ତା ନ ହେଲେ ସମସ୍ତେ ମୋତେ ଶୁଦ୍ଧ ଶ୍ରାଦ୍ଧ ହୋଇ ଖୁସିରେ ରହିବ ।

ତା କଥା ଶୁଣି ସଖିମାନେ ଅନେକ କନ୍ଦାକଟା କଲେ । ହେଲେ ସେ କଥାପ୍ରତି ମୀନା ମୋଟେ ଭ୍ରୂକ୍ଷେପ ନ କରି ବାହାରିବାର ବନ୍ଦୋବସ୍ତ କଲା । ଘୋଡା ଟା ଖାଇ ସାରିଥାଏ । ମୀନା ତାକୁ ଆଉଁସି ଦେଇ କହିଲା—ପ୍ରଭୁଭକ୍ତ ଘୋଡ଼ା ତୁ । ପ୍ରଭୁର ଉପକାର ପାଇଁ ଦି' ଗୁଣ ବଳ ବିକ୍ରମରେ ଲାଗିବାକୁ ହେବ । ଆଉ ବିଶ୍ରାମ ନାହିଁ । ଏହି ରାତାରାତି ଉଡ଼ି ଚାଲ ସମୁଦ୍ର କୂଳକୁ ।

ଘୋଡ଼ା ଆସନ ଦେଲା । ମୀନା କୁମାରୀ ବସିଲା ମାତ୍ରେ ଉଡ଼ାଜାହାଜ ଭଳି ଉଡ଼ିଲା ସେ ଶୂନ୍ୟେ ଶୂନ୍ୟେ ।

ନୀଳ ସମୁଦ୍ର । ଢେଉ ଉପରେ ଢେଉ ଉଠୁଛି । ଘୁ ଘୁ ପବନ କାନ ଫାଟି ଖସୁଁ । କର ଦେଉଥାଏ । ସେତେବେଳକୁ ରାତି ପାହିନାହିଁ । ଆକାଶରେ ଅସଂଖ୍ୟ ତାରା ମିଞ୍ଜି ମିଞ୍ଜି ହୋଇ ଜଳ ଦର୍ପଣରେ ମୁହଁ ଦେଖୁଥାନ୍ତି । ଦୂରରେ ଦୂରରେ ବେଳେ ବେଳେ ପାଲବନ୍ଧା ବୋଇତ ଖଣ୍ଡିଏ ଖଣ୍ଡିଏ ଭାସି ଯାଉଥାଏ ପବନର ଅନୁକୂଳ ଗତିରେ ।

ମୀନା କୁମାରୀକୁ ପକ୍ଷୀରାଜ ଘୋଡ଼ା ନେଇ ପହଞ୍ଚାଇ ଦେଲା । ଏତେବାଟ ଉଡ଼ିଆସି ଟିକିଏ କ୍ଳାନ୍ତ ଲାଗୁଥାଏ । ତେଣୁ ସେ ତଳକୁ ଓହ୍ଲାଇବା ପାଇଁ ଘୋଡ଼ାକୁ ଇଙ୍ଗିତ ଦେଲା । ଶିକ୍ଷିତ ଘୋଡ଼ା, ତାକୁ ବୁଝିବାକୁ କିଛି ଅଡୁଆ ନାହିଁ । ତେଣୁ ସେ ଧୀରେ ଧୀରେ ତଳକୁ ଓହ୍ଲାଇ ଗୋଟିଏ ବାଲିକୁଦ ଉପରେ ଠିଆ ହେବାରୁ ମୀନା ଆସ୍ତେ କରି ତଳକୁ ଆସିଲା ।

ଦୁହେଁ ଟିକେ ଦମ ନେଲେ । ମୀନା ତା ଘରୁ ଯୋଡ଼ିଏ ଲଡ଼ୁ ଆଣିଥିଲା । ତାକୁ ଖାଇଲେ ଦୀର୍ଘ ଛ' ମାସ ପର୍ଯ୍ୟନ୍ତ ସେ କୌଣସି ପ୍ରାଣୀକୁ ଭୋକ ଶୋଷ ବାଧେନ କି ଦୁର୍ବଳତା ଆସେନି । ବରଂ କାମ କରିବାକୁ ମନରେ ଦି'ଗୁଣ ଉତ୍ସାହ ଆସେ । ସେହି ଲଡ଼ୁରୁ ମୀନା ଗୋଟିଏ ଖାଇ ଆଉ ଗୋଟିଏ ଘୋଡ଼ାକୁ ଖୁଆଇଲା ।

ରାତି ପସର ଫାଟି ଆସିଲାଣି । ସନ୍ଧ୍ୟା ପୂର୍ବରୁ ତାକୁ ସମୁଦ୍ର ପାରି ହେବାକୁ ପଡ଼ିବ । ଲୁଣ ସମୁଦ୍ର ଆର ପାରିରେ ପଡ଼ିବ ଗଣକ ଦ୍ୱୀପ । ସେ ଦ୍ୱୀପରେ ମୋହନା ଗଣକ ଘର । ଗଣନା କରି ସତ କଥାଗୁଡ଼ିକ ସେ ପ୍ରାଞ୍ଜଳ ଭାବରେ କହିଦିଏ । ମାତ୍ରେ ଆଗ କଥା କହିପାରେନି । ଯାହାହେଉ ପଛେ ମୀନାର ଇଚ୍ଛା

ପ୍ରଥମେ ମୋହନା ଗଣକଙ୍କୁ ଦେଖାକରି ରାଜାପୁଅ ମଲ୍ଲ କି ବଞ୍ଚିଲ ଆଗେ ବୁଝି ନେବାକୁ ହେବ । ପରେ ଯାଇ ଅନ୍ୟ କଥା ।

ଲଡ଼ୁଟି ଖାଇ ଦେବା ପରେ ପକ୍ଷୀରାଜ ଘୋଡ଼ା ଖୁବ୍ ସଚେତ ହୋଇ ଉଠିଲା । ତା ଦେହରେ ଆଉ କ୍ଲାନ୍ତି ନାହିଁ । ମନ ଫୁଲପରି ହାଲୁକା ଲାଗୁଛି । ଦେହରେ ହାତିଏ ବଳ ॥ ପରେ ଯେମିତି ସମୁଦ୍ରଟା ତାକୁ ଲାଗୁଛି ଗୋଟିଏ ନାଳ ପରି । ତେଣୁ ସେ ମନଖୁସିରେ ଗୋଡ଼ହାତ ଖେଳାଇ ଖେଳି କରି ବୁଲି ବୁଲି ହେଉଥାଏ । କେବେ କେବେ ହ୍ରେଷାରବ କରୁଥାଏ ।

ଏ ମଧ୍ୟରେ ମୀନା କୁମାରୀ ତାର ସାଧୁଆ ସାଧୁଆ କାମ ବଢ଼ାଇ ଦେଇଛି । ଆଉ ହେଳା କରିବା ଉଚିତ ନୁହେଁ । ସକାଳ ହେବା ପୂର୍ବରୁ ଅନୁକୂଳ କରିବା ପାଇଁ ଘୋଡ଼ା ପାଖରେ ପହଞ୍ଚିଲା ଓ ତା ପିଠି ଆଉଁସି ଦେଇ କହିଲା—ପ୍ରଭୁଭକ୍ତ ଘୋଡ଼ା ତୁ । ମୁଁ ବାହାରିଛି ତୋର ପ୍ରଭୁର ମଙ୍ଗଳ ଚିନ୍ତାରେ । ତେଣୁ ତୋତେ ପ୍ରାର୍ଥନା କରୁଛି; ପ୍ରଭୁଙ୍କୁ ତୋର ନ ପାଇଲେ ତୁ ଆଉ ମୁଁ ଦୁହେଁଯାକ ପ୍ରାଣ ବିସର୍ଜନ କରିବା ପଛକେ, ରାଜ୍ୟକୁ ଫେରିବାନି ।

ଘୋଡ଼ା ତା ଭାଷାରେ ହ୍ରେଷାଧ୍ୱନି କରି ସମ୍ମତି ଜଣାଇଲା ପରେ କୁମାରୀ ଯାଇ ତା ପିଠିରେ ବସି କହିଲା—ଚାଲ ଭାଇ ! ଗଣକ ଦ୍ୱୀପକୁ ।

ଘୋଡ଼ା ବଜୁଳି ପରି ଆକାଶରେ ଉଡ଼ିବାକୁ ଲାଗିଲା ।

ଏଣେ କୁଣ୍ଡଳକେତୁ ଦୈତ୍ୟ ରାଜ୍ୟରେ ମହିନ୍ଦ୍ରକୁ ମାରି, ମୀନା ଓ ତା'ର ସଖୀମାନଙ୍କୁ ଦଣ୍ଡ ମଣ୍ଡ ଦେଇ ଫେରିଲା ନିଜ ରାଜ୍ୟକୁ । ହେନାକୁ ମଧ୍ୟ ଗୁଡ଼ାଏ ମାରି ସ୍ଥିର କଲା । ଶୀଘ୍ର ବାହା ହେବାକୁ ଧମକ ଚମକ ଦେଲା । ହେଲେ ଫଳ କିଛି ହେଉନ । ଯୋଉ କଥାକୁ ସେଇ କଥା । ଦୁଃଖିନୀ ହେନା ଆଖିରୁ

ରକ୍ତ ମିଶା ଲୁହ ଗଡ଼ାଇ କହିଲି—ବାର ବର୍ଷ ସମ୍ପୂର୍ଣ୍ଣ ନ ହେଲେ ମୁଁ ବନ୍ଧ ହେବିନି । ତୁ ଯଦି ବଳ ପ୍ରୟୋଗ କରି ମୋ ନାରୀତ୍ୱ ଉପରେ ଆଞ୍ଚ ଆଣିବୁ, ତେବେ ଅଭିଶାପ ଫଳ ଭୋଗିବୁ । ଗୁହିଫାଟି ଆଖି ପଲକ ମାତ୍ରେ ତୋର ପ୍ରାଣଯିବ ।

ଅସୁରର ଏହି କଥା ପଦକୁ ଭାରି ଭୟ । ତେଣୁ ସେ ଏପର୍ଯ୍ୟନ୍ତ ତା ନାରୀତ୍ୱ ଉପରେ ଆକ୍ରମଣ ନ କରି ଅପେକ୍ଷା କରିଛି ବନ୍ଧ ହେବାକୁ । ଆଗେ ହେବାକୁ ବନ୍ଧ ହୋଇ ସାରିଲେ ଯାଇ ମୀନା କଥା । ମୀନା ବି ବଡ଼ ଭଜଣୀ ପରି ଅଟଳ ଅଛି । ସେହି ବାର ବର୍ଷ କଟିଲୁ ଗୋଟିଏ ଦିନ ବି କମ୍ ହରିନି ।

ନାନା ପ୍ରକାର ଅଶାନ୍ତରେ ପଡ଼ି ସେଦିନ କାହିଁକି କୁଣ୍ଡାଳ କେଜୁ ମନରେ ଟିକଏ ଖଟକା ଲାଗିଲି । ଖାଇବା ପିଇବା ପାଇଁ ମୋଟେ ଇଚ୍ଛା ହେଲିନି । ଖାଲି ଗୋଟାଏ ଅଶାନ୍ତି ଭିତରେ ପଡ଼ି ଭାରି ବିରକ୍ତ ଲାଗିଲି । ଟିକି ଶୋଇବାକୁ । ମାତ୍ର ନିଦ ହେଲିନି । ପଥର ଚଟାଣ ଉପରେ ପଡ଼ି ଗୁଡ଼ାଏ କାନ୍ଦେଇ ପିଟି ହେଲି । ହାଇ ହାକୁଟି ମାଇଲି । ଗୀତ ଗାଇଲି । ଏମିତି ଏମିତି ଘଣ୍ଟା କଟି ଯିବାରୁ ସକାଳୁ ଯାଇ ପଶିଲି ବଣ ଭିତରେ ।

ସମ୍ବର ପଲ, ମିରଗ ପଲ ଦରଣ୍ଡା ଦରଣ୍ଡି କରି ଆଣିଲି ଯୋଡ଼ାଏ କୁଟୁରି । ନିଆଁ ଜଳାଇ ତାଙ୍କୁ ପୋଡ଼ିଲି । ଖଣ୍ଡାରେ ଖଣ୍ଡ ଖଣ୍ଡ କରି କାଟି ଜଳଖିଆ କରି ସାରିଲା ପରେ ଭାବିଲି— ମୀନାକୁ ତ କାଲି ଗୁଡ଼ାଏ ମାଡ଼ ଦେଇ ଆସିଲି । ସଖୀଗୁଡ଼ାଙ୍କୁ ମଧ୍ୟ ଖୁବ୍ ତାଗିଦ୍ କଲି । ମାତ୍ର ସେମାନେ କ'ଣ କରୁଛନ୍ତି । ଥରେ ନ ଦେଖିଲେ ଚଳିବନି । ତେଣୁ ଯାଇ ସଂପୂଟକ ଘଣ୍ଟାରେ ଧନାଇଲି ।

ଏ କ'ଣ ? ମୀନା କୁମାରୀ ସମୁଦ୍ର କୂଳେ ଠିଆ ହୋଇଛି । ପାଖରେ ଗୋଟାଏ ପକ୍ଷୀରାଜ ଘୋଡ଼ା । ଅସୁର ରାଗରେ ଗର୍ଜି

ଉଠି କହିଲା—ବଜାତ୍ ଟୋକା, ମୋତେ ଠକି ଦେଇ ପଳାଇ ଯିବାକୁ ବସିଛୁ ! ଆଚ୍ଛା, ଦେଖୁଛି ମୁଁ । ଏହା କହି ଶୂନ୍ୟ ମଣ୍ଡଳକୁ ଝେପି ଗଲା । ଘଣ୍ଟାଟାକୁ ହାତରେ ଧରି ଦେଖୁଥାଏ । ବିଜୁଳି ବେଗରେ ଉଡ଼ୁଥାଏ ।

ପଡ଼ିଲା ସମୁଦ୍ରକୂଳ । ଖାଲି ବାଲୁକା ପ୍ରାନ୍ତର । ବଣ, ଜଙ୍ଗଲ ଝୁଡ଼ି । ଅସଂଖ୍ୟ ଜୀବ ଜନ୍ତୁ । ଅସୁରକୁ ଦେଖି କିଏ ଯାଇ କେଉଁଠି ପଶିଲା । କିଏ ଗହଳିଆ ଲତାତଳେ ଲୁଚିଲା । ମାଙ୍କଡଗୁଡ଼ାକ ଗଛ ଡାଳ ଧରି ଗୁମ୍ ଖାଇ ବସିଗଲେ । ମାତ୍ର ମୀନାକୁମାରୀ କାହିଁ ? ସମୁଦ୍ର କୂଳ ଯାଇ ଖୋଜି ଖୋଜି ଅସୁର ଥକି ପଡ଼ିଲା । କୁମାରୀ ଓ ଘୋଡ଼ା ଯେଉଁଠି ଠିଆ ହୋଇଥିଲେ, ସେଠି ଯାଇ ପାଦ ଚିହ୍ନ ଦେଖିଲା । ମାତ୍ର ଗଲା କୁଆଡ଼େ ?

ଘଣ୍ଟାକୁ ରାଗରେ ତଳେ କଚାଡ଼ି ଦେବାରୁ ତା ଭିତରୁ ବାହାରିଲା ବୃଖଣ୍ଡେ ଉଚାର ଗୋଟିଏ ଦାଢ଼ିଆ ମଣିଷ । କହିଲା— ଆରେ ଅସୁର ! ତୁ ମିଛରେ ବ୍ୟସ୍ତ ହେଉଛୁ କାହିଁକି ? ଘଣ୍ଟାର କ୍ଷମତା ସମୁଦ୍ର ଏଇପାରି ପର୍ଯ୍ୟନ୍ତ । ସେପାରି କଥା ମୋତେ ଦେଖା ଯିବନି । ଖୋଜିବା ଲୋକ ଏପାଖରେ ନାହିଁ । ତୁ ମିଛରେ ବାଡେଇ ପିଟି ନ ହୋଇ ନିଜ ଘରକୁ ଫେରିଯା । ବେଶରକୁ ସିଆଣା କରିଦେଲେ ସବୁ ବିଗିଡ଼ି ଯିବ । ସେ ଯାଇଛି ଯାଉ । ପୁଣି ଏପାରିକି ଲେଉଟି ଆସିଲେ ଘଣ୍ଟାରେ ଦେଖାଯିବ । ଏତିକି କହି ଦାଢ଼ିବାଲା ପୁଣି ଘଣ୍ଟା ଭିତରେ ପଶିଗଲା । କୁଣ୍ଡଳ ଚକଟୁ ରାଗରେ ଫଁ ଫଁ ହୋଇ ଦଉଡ଼ିଲା ପୁଣି ମାୟା ପୁରୀକୁ ।

ସଖିମାନେ ଯେତେବେଳକୁ ମନଖୁସିରେ ବସି ପଶା ପାଲି ଗଡ଼ାଉଥିଲେ । ଗୋଟିଏ ସଖୀ କାଠି ଗଡ଼ାଉ ଗଡ଼ାଉ ଗୀତଟିଏ

ଗଡ଼ ଗଡ଼ ଯାଆ କାଠି କହିବୁ ବାରତା
ମୋ ସଖି ମାନ ଭୁଖିବେ ଜଗତ କରତା ।
ଅସୁରକ ଦୁଃଖ ସହି ହେଲେଣି ପଥର
ଦେଖି ଦେଖି ଆମେ ଏଠି ହେଉଛୁ କାତର ।
ସତେକି କ୍ଲେଶ ତାଙ୍କର ପ୍ରଭୁ ଘୁଞ୍ଚାଇବେ
ଦୁଇ ଭଉଣୀଙ୍କୁ ଦୈତ୍ୟ ହାତୁ ବଞ୍ଚାଇବେ ।

ଠିକ୍ ଏତିକିବେଳେ ଅସୁର ଆସି ପହଞ୍ଚିଲା । ରାଗରେ ତା ମୁହଁ ନାଲି ପଡ଼ିଥାଏ । ଗୋଟାଏ ଗର୍ଜନ କରି କହିଲା— ତୁମେ ସବୁ ମଗଜ ହେଲଣି । ମୀନାକୁ କୁଆଡ଼େ ପଠାଇ ଦେଇ ମଉଜ କରୁଛ ନା ?

ଗୋଟିଏ ଚତୁର ସଖି ଆଗ ବଢ଼ିପଡ଼ି କହିଲା— ଆଜ୍ଞା ଦୈତ୍ୟରାଜ ! ସେ ଟୋକି ଖଣ୍ଡିକ ଏଡ଼େ ବଜାତ ବୋଲି ଆମେ କ'ଣ ଜାଣି ଥିଲୁ କି ? କାଲି ରାତିରେ ତୁମେ ଯିବା ପରେ ପରେ ଆମକୁ ସବୁ ମନ୍ତ୍ର ବଳରେ ଅଚେତା କରି ଦେଇ କେତେବେଳେ ଯେ କୁଆଡ଼େ ପଳାଇଲା ଆମେ ମୋଟେ ଜାଣି ପାରୁନାହୁଁ । ତାକୁ ଏଠି ବହୁତ ଖୋଜାଖୋଜି କରି ବସିଥିଲୁ ତୁମ ପାଖକୁ ଖବର ଦେବାପାଇଁ ।

ପଚାରିଲା—ଖବର ଦେଉଛ ?

କହିଲା—ଜମା ଯାଇଛୁ ତାଙ୍କୁ ବୁଲାଇବାକୁ ।

ଅସୁର ଟିକିଏ ଖୁସି ହୋଇ କହିଲା—ତାକୁ ଫେରାଇ ଆଣ । ମୁଁ ଆସିଲିଣି । ଆଉ ଖବର ଦେବା ଦରକାର ନାହିଁ । ତୁମେ ସମସ୍ତେ ଖୁବ୍ ସାବଧାନ ଭାବେ ମାୟାପୁରୀକୁ ଜଗାରଖା କରୁଥାଅ । ମୁଁ ଖୁବ୍ ଅଳ୍ପ ଦିନ ଭିତରେ ମୀନାକୁ ଧରି ଆଣି ତୁମର ଆଗରେ ପୋଡ଼ି ଖାଇବି । ତେବେ ଯାଇ ମନ ଶାନ୍ତ ହେବ । ଆଉ ଦେଖ, ଖୁବ୍ ସାବଧାନରେ ନ ଚଳିଲେ ତୁମ ସମସ୍ତଙ୍କୁ ପୋଡ଼ି ଖାଇବି ।

ପଳାଇ ଗଲେ ବି ବଞ୍ଚି ପାରିବନି । ଯେଉଁ ଗାଆଁରେ ଲୁଚିବ, ସେଠୁ ଯାଇ ଧରି ଆଣିବ । ମୋ ସ୍ଫୁଟିକ ଘଣ୍ଟାରେ ସବୁ ଜାଗା ଦେଖାଯାଏ । କହୁ କହୁ ଅସୁର ପୁଣି ଉଡ଼ି ଚାଲିଗଲା ।

ସଖୀମାନେ ଭଲ ବଞ୍ଚାଣଟେ ବଞ୍ଚିଗଲେ ଭାବି ଈଶ୍ୱରଙ୍କୁ ମୁଣ୍ଡିଆଟିଏ ମାରି ପୁଣି ଲାଗିଗଲେ ପାଳି ଖେଳ ଓ ଗୀତ ବୋଲାରେ ।

କଥାରେ କହନ୍ତି—ନ ବିଦ୍ୟା ନଚଃ ପୌରୁଷଃ
ଭାଗ୍ୟେ ଫଳନ୍ତି ସର୍ବଦାଃ ।

ବିଦ୍ୟାହୀନ ଲୋକର କୌଣସି ସ୍ଥାନରେ ପୌରୁଷ ମିଳେ ନାହିଁ । ଭାଗ୍ୟରେ ଯାହା ଥାଏ ତାହା ନିଶ୍ଚୟ ମିଳେ । ରାଜକୁମାର ମହିନ୍ଦ୍ର ଜନ୍ମ ହେଲା ଦିନୁ ରାଜବାଟୀରେ କେତେ ହେଣ୍ଟଗୋଳାରେ ବଢ଼ି ଯୁବକ ହେଲା । ପାଠ ଶାଠ ପଢ଼ି ଧନୁର୍ବିଦ୍ୟାରେ ପାରଙ୍ଗମ ହୋଇ ଉଠିଲା । ଦଶ ଦଶଟା ଦାସ ଦାସୀ ଦିନ ରାତି ତା ସେବାରେ ନିଯୁକ୍ତ ରହୁଥିଲେ । ସେ ଯାହା ଯେତେବେଳେ କହୁଥିଲା, ତା କଥାକୁ କେହି ତଳେ ପକାଇ ଦେଉ ନ ଥିଲେ । ସୋନପୁର ରାଜା ମହିନ୍ଦ୍ର ବାହାଦୁରଙ୍କର ଗୋଟିଏ ହୋଲି ପୁଅ । ଏକୋଇରବଳା ବସିକେସନ ସେ । ତା ଭାଗ୍ୟରେ ପୁଣି ଏଇଆ ଥିଲା ।

ଶିକାର କରିବାକୁ ଆସି ବନ୍ଧୁର ମାୟାପୁରୀର ମାୟା ହରଣ ପଛରେ ଦଉଡ଼ି ନ ଥିଲେ ଅସୁର ହାତରେ କାହିଁକି ମରିଥାନ୍ତା । ଇଗଲ ପକ୍ଷୀ କାହିଁକି ଗୋଟାଏ ଆଖି ତାଡ଼ି ଖାଇଥାନ୍ତା । ସବୁ ଭାଗ୍ୟଦୋଷ । କାହାକୁ ଦୋଷ ଦେଲେ ବା କ'ଣ ହେବ ।

ବାଘଛୁଆ ଅଳି ଲଗାଇବାରୁ ବାଘୁଣୀ ବିଲ୍ବସ ବହୁତ ଚେଷ୍ଟା କରି ଅମସ୍ତ ଗଛର ଡେର ଖଣ୍ଡେ ଆଣିଲା ଯାହା ଡେମିର ବାକାକା ଆଶ୍ରମ ବଗିଚାରୁ । ତାର ଫଳରେ ବିଚରା ମଚ୍ଛିନ୍ଦ୍ର ପ୍ରାଣ ପାଇଛି । ବାଘ ବାଘୁଣୀ ତାକୁ ଖୁବ୍ ଭଲ ପାଆନ୍ତି । ପିଠିରେ ବସାଇ ବଣ ଯଙ୍ଗଲ ବୁଲାନ୍ତି । ବାଘ ଛୁଆ ଦି'ଟା ବନ୍ଧୁ ହେଲେ ତା ପାଖ ଛାଡ଼ନ୍ତିନି । ସବୁବେଳେ ଖେଳନ୍ତି, ଶିକାର କରିବାକୁ ଯାଆନ୍ତି । କୋଳି ତୋଳି ଖାଆନ୍ତି । ବେଳେ ବେଳେ ତରକାରି ଫଳ ଓ ମିରଗ ମାଂସ ମିଳିଲେ ମଚ୍ଛିନ୍ଦ୍ର ତାକୁ ରନ୍ଧା ବଢ଼ା କରି ସେମାନଙ୍କୁ ଦିଏ । ବାଘ ଯାକ ଖାଇ କରି ଖୁବ୍ ଖୁସି ହୁଅନ୍ତି । ଏଣୁ ମଚ୍ଛିନ୍ଦ୍ର ତାଙ୍କର ହୋଇଥାଏ ଖୁବ୍ ପ୍ରିୟ । ତାକୁ ବନ୍ଧୁ ନ ଦେଖିଲେ ବାଘ ଛୁଆ ଓ ତାଙ୍କ ମା' ବାପା ବଣା ହୋଇ ଯାଉଥାନ୍ତି । ମୋଟ ଉପରେ କହିବାକୁ ଗଲେ ବାଘ ପରିବାରରେ ରହି ମଚ୍ଛିନ୍ଦ୍ର ଗୋଟିଏ ବାଘ ପାଲଟି ଯାଇଥାଏ । ଗୋଟିଏ ଆଖି ନ ଥିବାରୁ ବେଳେ ବେଳେ ତା ମନରେ ଦୁଃଖ ଆସେ । ପଛ କଥା ଗୁଡ଼ିକ ମନେ ପକାଇ କାନ୍ଦେ । ବାପ, ମା ଓ ରାଜ୍ୟବାଡ଼ି କଥା ଆହୁରି କଷ୍ଟ ଦିଏ । ସ୍ନେହ ସହାନୁଭୂତି ଛାଡ଼ି ଚାଲିଯିବା ପାଇଁ ମନ ହୁଏନି । ଏମିତି ଏମିତି ତା ଦିନକାଳ କଟିବାରେ ଲାଗିଲା ।

ତେଣେ ବାପା ମା' ତାର ଝୁଙ୍କର ଚାକର ଲଗାଇ ବହୁତ ଖୋଜଖବର ନେଲେ । କୌଣସି ସ୍ଥାନରେ ମଚ୍ଛିନ୍ଦ୍ର କି ତା ଘୋଡ଼ାର ସନ୍ଧାନ ମିଳିଲା ନାହିଁ । ତେଣୁ ଦୁଃଖ କଷ୍ଟରେ ସବୁ-ବେଳେ ପୁଅକୁ ଝୁରି ଝୁରି ତାଙ୍କର କଣ୍ଠ ଭଙ୍ଗିଲା । ତେବେ ବି ଖୋଜାଲୋଡ଼ା ଚାଲିଥାଏ ।

ଏଣେ ମୀନାକୁମାରୀ ପକ୍ଷୀରାଜ ଘୋଡ଼ା ସାହାଯ୍ୟରେ ଉଡ଼ି ଉଡ଼ିକା ପହଞ୍ଚିଲା ଗଣକ ଦ୍ୱୀପରେ । ଉଦୁଉଦିଆ ଖରାବେଳ ।

ସମୁଦ୍ର କୂଳ ବାଲି ତାତି ଖଇ ଫୁଟୁଛି । ପାଖରେ ଘର ଗ୍ରାମଭି ଅଭାବ । ପାଣି ମୁନ୍ଦାଏ ମିଳିବା ବଡ଼ କଷ୍ଟ । ହେଲେ ମୀନାକୁମାରୀର ଖାଦ୍ୟ କି ଜଳର ଆବଶ୍ୟକ ନ ଥିଲା । ତେଣୁ ସେ କଷ୍ଟେମଷ୍ଟେ ଯାଇ ଗୋଟିଏ ଗହଳିଆ ଗଛ ଛାଇରେ ଘୋଡ଼ା ବାନ୍ଧି ନିଜେ ଟିକିଏ ଶାନ୍ତିରେ ବସିଲା ।

ଗଣକ ଘରଟା ଖୋଜି ବାହାର କରିବାକୁ ପଡ଼ିବ । ଏଥିପାଇଁ ମନଟା ଚଞ୍ଚଳ ହୋଇ ଉଠୁଥାଏ । ଏମିତିବେଳେ ଦେଖାଗଲା କାଳିଆ କାଳିଆ ମଣିଷ ଗୁଡ଼ାଏ । ହାତରେ ଖଣ୍ଡେ ଧନୁ ଓ କାନ୍ଧରେ ଗୋଛାଏ ଗୋଛାଏ ଶର ପକାଇ ଆସୁଛନ୍ତି । ସମସ୍ତେ ଏକ ପ୍ରକାର ଲଙ୍ଗଳା କହିଲେ ଚଳେ । ଦଳରେ ନାରୀ ଓ ପୁରୁଷ ଉଭୟ ପ୍ରକାର ଲୋକ ଅଛନ୍ତି । ଗଛ ପତ୍ର ସବୁ ପଟୁକାରେ ଗୁନ୍ଥି ଅଣ୍ଟାରେ ଗୁଡ଼ାଇ ଥାଆନ୍ତି । ମୁଣ୍ଡରେ ଖୋସା ହୋଇଥାଏ ମେଞ୍ଚା ମେଞ୍ଚା ଚଢ଼େଇ ପକ୍ଷୀ । ଲୋକ ଗୁଡ଼ାକ ଖୁବ୍ ବାଙ୍ଗର । ଅନ୍ଦାଜ ଦ' ହାତରୁ ବେଶୀ ଉଚ୍ଚ ନୁହନ୍ତି । ସେମାନେ ଯାହା କଥାବାର୍ତ୍ତା ହେଉଥାନ୍ତି ସେ କଥା ବୁଝିବା ମଧ୍ୟ କଷ୍ଟ ।

ମୀନ ଭାବିଥିଲା ସେହି ଲୋକମାନଙ୍କୁ ପଚାରି ଗଣକର ସନ୍ଧାନ ନେବ ବୋଲି । ମାତ୍ର ଫଳଟା ବିପରୀତ ହେଲା । ସେମାନେ ହଠାତ୍ ଗୋଟାଏ ଘୋଡ଼ା ଓ ଗୋଟିଏ ମଣିଷ ଦେଖି ଆନନ୍ଦରେ ଚିତ୍କାର କରି ଉଠିଲେ । ଜଣେ କହିଲା—ଆରେ ଭାଇ ! ଜନ୍ ଠାକୁର ଆମର ମାସେହେଲା କିଛି ଖାଇନ । ଆଜି, ଏ ଦୁଇଟାକୁ ନେଇ ତାଙ୍କ ପାଖରେ ହାବୁଡେଇ ଦେଲେ ପୁଣି ମାସେ ଚଳିଯିବ ।

ତା କଥାଟା ସବୁରି ମନକୁ ପାଇଲା । ତହୁଁ ହୋ ହୋ ପାଟି ଭୁଣ୍ଡ କରି ମୀନା ଓ ଘୋଡ଼ାକୁ ଘେରିଗଲେ । ଯେତେ କାକୁତି

ମିନତି କଲେ ବା ଶୁଣୁଛି କିଏ । ଗୁଡ଼ାଏ ଲଟା ଆଣି ମୀନାର ଗୋଡ଼ ହାତ ବାନ୍ଧି ପକାଏ କାନ୍ଧେଇଲେ । ଆଉ ପକାଏ ଘୋଡ଼ା ଲଗାମ ଉତ୍ପତ୍ତି ଧରି ଟ୍ଟୁଲଲେ ଚକ୍ରାର କରିକରିକା ।'

ଥୋଡ଼ାଏ ଦୂର ଗଲାପରେ ପଡ଼ଲା ଗୋଟିଏ କାଠଘର । ସେହି ଘର ଭିତରେ ପଡ଼ିଛି ଗୋଟାଏ ଖାଅନ୍ତା ପ୍ରକାଣ୍ଡ ଅଜଗର ସାପ । ଆଖି ଯୋଡ଼ାକ ତାର ଦପ୍ ଦପ୍ ହୋଇ ଜଳି ଉଠୁଛି । ଦେଖିବାକୁ ଅନ୍ଧନକ ମୋଟ । ପାଟିଟା ଆଁ କରି ଦେଲେ ଏକା ଥରକେ ପୁରୁଆଏ ମଣିଷ ଗିଳି ଯିବ ।

ମୀନାକୁ ଓ ଘୋଡ଼ାକୁ ନେଇ ସେହି କାଠଘରେ ପକାଇ ଦେଲେ । ସାପଟା ଯେଉଁଠି ଥାଏ, ସେଠି ଢିଆ ହୋଇ ଥାଏ ଗୋଟେ କାଠର ବାଡ଼ । ମଝିରେ ଲାଗିଥାଏ କବାଟ । ଜଙ୍ଗଲି ଲୋକ ଗୁଡ଼ାକ ନଜର ଇଷ୍ଟ ଦେବତା ରୂପେ ଏହି ଅଜଗର ସାପଟାକୁ ପୂଜା କରନ୍ତି । ଯେଉଁଦିନ ତା ପାଇଁ କିଛି ଜୀବଜନ୍ତୁ ଶିକାର ଯୁଟେ, ସେଦିନ ସେ ଶିକାରକୁ ଏ ପାଖରେ ପକାଇ ଗୁଡ଼ାଏ ବାଜା ଫାଜା ବଜାଇ ନାଚ କରନ୍ତି । ଖୋଗ ସ୍ୱର ସରେ । ପଣା ପାଣି ଢଆଯାଏ । ତା ପରେ ସାପ ଥିବା ଘରର କବାଟ ଖୋଲି କହନ୍ତି—

"ଖା ଜନ୍ ଖା ବଳ
ନଡ ବୁଝୁଥା ଆମରି ଅଳ ।"

ସାପ ଯେତେବେଳେ ପଇଜ୍ଞା ଦେଖାଇ ଶିକାର ଧରି ଗିଳେ, ସେତେବେଳର ଖୁସି କହିଲେ ନ ସରେ ।

ମୀନାର ସିନା ଗୋଡ଼ ହାତ ବନ୍ଧା ହୋଇଥିଲା; କିନ୍ତୁ ଘୋଡ଼ାଟା ଥିଲା ମୁକୁଳା । ଜଙ୍ଗଲିମାନେ ଖୋଗ ସ୍ୱର ଆଣି ଯେତେବେଳେ ବାଜା ଫାଜା ବଜାଇବାରେ ଲାଗିଗଲେ, ସେତିକିବେଳେ

ଚତୁର ଘୋଡ଼ା ନିଜ ଦାନ୍ତ ସାହାଯ୍ୟରେ କୁମାରୀ ଗୋଡ଼ ହାତରେ ବନ୍ଧା ହୋଇଥିବା ଲଟା ଗୁଡ଼ାକ ଛୁଣ୍ଡାଇ ପକାଇଲା ।

କେବେହେଲେ ସେ କଥା କହେ ନାହିଁ । ଆଜି ଜନ୍ତୁ କଥା କହିବାର କୁମାରୀ ଶୁଣିଲା । ଘୋଡ଼ା କହିଲା—ଚଞ୍ଚଳ ମୋ ପିଠିରେ ବସ । ଏଠୁ ପଳାଇ ଯିବା ।

ଏ କଥା ଶୁଣି ମୀନା ଯାଇ ତା ପିଠିରେ ବସି ପଡ଼ିଲା । ଜଙ୍ଗଲି ଗୁଡ଼ାକ ଖୁବ୍ ଘାରବାଜା ବଜାଇ ଉଦଣ୍ଡ ନାଚ ନାଚିବାରେ ମାତିଛନ୍ତି । ଘୋଡ଼ା ଗୋଟାଏ ବଡଟାଳ ହସ ହସିଦେଇ ଲମ୍ଫିଲା ଉପରକୁ । ଅଳ୍ପ ଆଗରୁ ଶିକାର ପଳାଇ ଯିବା ଦେଖି ସାପଟା ଖୁବ୍ ରାଗରେ ବୋବାଇ ଉଠିଲା । ଜଙ୍ଗଲିମାନେ ଚମକି ଉଠିଲେ । ହେଲେ ଆଉ ଉପାୟ କଣ । ସବୁତ ପାସର ଫାଟି ଯାଇଛି । ଖାଲି ଗୁଡ଼ାଏ କୋଡ଼ି କସ୍ରତି ହୋଇ ଶେଷକୁ ଭୂଇଁ ପଡ଼ିଲେ ।

ଘୋଡ଼ା ସେ ଦ୍ୱୀପ ତମାମ ଉଡ଼ି ଉଡ଼ି ଆହୁରି ଅନେକ ଦୂର ପରେ ଠାବ କଲା ଗୋଟିଏ ସୁନ୍ଦର ସ୍ଥାନ । ସେଠି ଘର ଗ୍ରାମ ନ ଥିଲେ ମଧ୍ୟ ଗୋଟିଏ ଦେଉଳ, ଗୋଟିଏ ପୋଖରୀ ଓ ଶ୍ରେଷ୍ଠ ବଗିଚାଟିଏ ଅଛି । ବେଶି ଜଙ୍ଗଲିଆ ନୁହେଁ । ତାକୁଁ ଗଣକର ଘର ବଡାର ପକ୍ଷୀରାଜ ଓହ୍ଲାଇ ପଡ଼ିଲା ।

କୁମାରୀ ଦେଉଳ ପାଖକୁ ଯାଇ ଦେଖେତ ମାଙ୍କଡ଼ଟିଏ ମୁଣ୍ଡରେ ଟୋପି ଓ ହାତରେ ଯାଉଳି ବେତଧରି ବସିଛି । ଆଖିରେ ଯେଉଁ ଲାଲ୍ ବର୍ଣ୍ଣର ଚସମାଟି ଲଗାଇଛି, ସେଥିରେ ଦେଖାଯାଉଛି ଯୋଡ଼ାଏ ନିଆଁ ଜଳଲା ପରି ।

ମୀନା ହଠାତ୍ ଯାଇ ତା ପାଦତଳେ ଲମ୍ବ ହୋଇ ମୁଣ୍ଡିଆ ମାରିବାରୁ ସେ ମନ ଖୁସିରେ ହସଟାଏ ହସି ଦେଇ କହିଲା—ଅହ୍ୟ ସୁଲକ୍ଷଣୀ ହୋଇ ପାଚିଲା ବାଳରେ ସିନ୍ଦୂର ନାଆ ଲୋ ମାଆ ! ତୋର ଖ ବ୍ ଶୁଭ ହେଉ ।

ମୀନା ପଚାରିଲା—ତୁମେ କଏ ମହାତ୍ମା ?

ମାର୍କଣ୍ଡ କହିଲେ—ମୁଁ ହେଉଛି ମୋହନା ଗଣକଙ୍କ ମହାଦ୍ୱାରୀ । ଯେଉଁମାନେ ବିପଦରେ ପଡ଼ି ଏଠାକୁ ଆସନ୍ତି ଆଗେ ମୋ ସଙ୍ଗରେ ଦେଖା କରନ୍ତି ।

ପଚାରିଲା—ମୁଁ ଗଣକଙ୍କ ସାକ୍ଷାତ୍ ପାଇ ପାରିବି ?

କହିଲେ—କିଛି ପରୁଆ ନାହିଁ । ମୋ ପଛେ ପଛେ ଚାଲିଆ । ଏହିକ୍ଷଣି ସେ ପୂଜାପାଠ କରି ଉଠୁଥିବେ । ଭଲ ବେଳଟା ହୋଇଛି । ଦେଖା କଲାମାତ୍ରେ ସବୁ କଥା କହି ଦେବେ ଯେ ।

ମୀନା ମନରେ ଟିକିଏ ଆନନ୍ଦ ଆସିଲା । ମାର୍କଣ୍ଡ ଯିବାକୁ କହିବାରୁ ପୁଣି ପଚାରିଲା—ଘୋଡ଼ାଟି ମୋର ରହିବ କେଉଁଠି ?

ମାର୍କଣ୍ଡ କହିଲେ—ସେ ସେହିଠାରେ ଥାଉ । ତା ପାଇଁ କିଛି ଚିନ୍ତିବା ଦର୍କାର ନାହିଁ । ଏଠି କିଛି ବିପଦ ନାହିଁ ।

ଏଣିକି ଦୁହେଁ ବାହାରିଲେ ଗଣକ ପାଖକୁ । ପକ୍ଷୀରାଜ ଘୋଡ଼ା ଦେଉଳ ଦୁଆରେ ବୁଲି ଗୋଟିଏ ଗୋଟିଏ କଅଁଳିଆ ଦୁବ ଛିଣ୍ଡାଇ ଖାଇଲା ।

ଦେଉଳ ଭିତରେ ଦେଉଳ । ତା ଭିତରେ ପୁଣି ଦେଉଳ । ତା ଭିତରେ ଗୋଟିଏ ବାଟ, ସେପାଖକୁ ଗହିରା ନଈ । ନଈ ଭିତରେ ଜଣେ ଘାଟିଆ ଖଣ୍ଡେ ଛୋଟ ଡଙ୍ଗା ଖଟାଇ ବସିଛି । ମାର୍କଣ୍ଡ ମହାଦ୍ୱାରୀ ଓ ମୀନା ଯାଇ ସେ ଡଙ୍ଗାରେ ବସିଲେ । ନାଉରୀ କହିଲା—ମୋ ବକ୍‌ସିସ୍ ?

ମହାଦ୍ୱାରୀ ଟିକିଏ ମୁରୁକି ହସା ଦେଇ କହିଲେ—ଆରେ ଓଲୁ । ସେ ଗୋଟିଏ ଗରିବ ଲୋକ । ବଡ଼ କିଛି ବିପଦରେ ପଡ଼ି ଆମ ପାଖକୁ ଆସିଛି । ତାଠୁ ବକ୍‌ସିସ ନେବୁ କ'ଣ ! ଚଞ୍ଚଳ ଡଙ୍ଗା ବାହି ଚାଲ ।

ନାଉରୀ ଡଙ୍ଗା ବାହି ନେଲା । କୋଉଠି ଦୂର ଦୂରାନ୍ତରେ ଲହଡ଼ିରେ ଖେଳି ଖେଳି କେତେ ପଦ୍ମ ଫୁଲ ଭାସି ଆସୁଥାଏ । ନାଲି ନେଳି ଧଳା ହଳଦିଆ ସବୁ ପ୍ରକାର । ମହାଭାରୀ ମୀନାକୁ ଡାକି କହିଲା—ଆଲୋ ଝିଅ ! ତୋ ମନ ଯୋଉ ଫୁଲଟିରେ ମାନୁଛି, ସେଇ ଗୋଟିକ ଫୁଲ ହାତରେ ଧରିଥା । ଗଣତଙ୍କ ପାଦତଳେ ରଖି ମୁଣ୍ଡିଆ ମାରିବୁ ।

ମୀନା ଗୋଟିଏ ହଳଦିଆ ଫୁଲ ଧରିଲା । ଆଉ ଅଳ୍ପ ଦୂର ପରେ ଡଙ୍ଗା ଅଟକିବାରୁ ସମସ୍ତେ ଓହ୍ଲାଇ ଗଲେ । ଗୋଟିଏ ବାଲିର ଟୋଟା । ସେଇ ଟୋଟା ଭିତରେ ଅଛି ଖଣ୍ଡେ ସୁନାର ମଣ୍ଡପ । ମଣ୍ଡପ ପାଖରେ ପଡ଼ିଛି ଖଣ୍ଡେ ହୀରା ଖଟୁଲି । ସେ ଖଟ ଉପରେ ନେଳି, ନାଲି, ସବୁଜ, କଳା, ହଳଦିଆ ବର୍ଣ୍ଣର ଭାରି ସୁନ୍ଦର ଚଢ଼େଇ ପକ୍ଷଟି ବସିଛନ୍ତି । ତାଙ୍କ ପାଖକୁ ଲାଗି ଆଉ ଖଣ୍ଡେ ଖଟୁଲିରେ ବସିଛନ୍ତି ଜ୍ୟୋତିଷରତ୍ନ ମୋହନା ଗଣକ ।

ମୀନା ତୁମ୍ଭଗ ତା ପାଦତଳେ ପଦ୍ମ ଫୁଲଟି ରଖି ମୁଣ୍ଡିଆଟି ମାରିଲାକ୍ଷଣି ସେ ହସି ହସି କହିଲେ—ଆସିଲୁ ମୀନା ବେଇ ?

ମୀନା କାବାକାଠ ହୋଇ କହିଲା—ଖୁବ୍ ବିପଦରେ ପଡ଼ି ଆସିଛି । ତୁମେ ଦୟା ନ କଲେ ମୋର କିଛି ଉପାୟ ନାହିଁ ।

ଗଣକ କହିଲେ—ସେ କଥା ମୁଁ ଜାଣେ । ଯୋଉ ରାଜା ପୁଅ ପାଇଁ ତୋ ମନ ଉଡ଼ାଉଡ଼ କରୁଛି, ସେ ମରି ଯାଇଥିଲା । ଧର୍ମ ବଳରୁ ବାଘୁଣୀ ତା'କୁ ଜୀବନ ଦେଇଛି । ହେଲେ କ'ଣ ହେବ, ଗୋଟିଏ ଆଖି ତା'ର ଇଗଲ ପକ୍ଷୀ ନଷ୍ଟ କରି ଦେଇଛି । ତୁ ଚେଷ୍ଟା କଲେ ପୁଣି ସେ ଆଖି ପାଇବ ।

ପଚ୍ଚରିଲା—ଅସୁରଟା ମରିବ କିପରି ?

କହିଲେ—ହଁ, ସେଇଟା ନ ମରିବାଯାଏ ତୁମମାନଙ୍କର ଶାନ୍ତି ନାହିଁ । ତେଣୁ ଗୋଟିଏ କାମ କରିବାକୁ ହେବ । ଆମେ ତୋତେ ଗୋଟିଏ ଗୋଦଣ୍ଡ-ଖଣ୍ଡିଆ ଦେବା । ତୁ ତାକୁ ଦେହରେ ଗଳାଇ ପକାଇଲେ ଅସୁର ସମ୍ପୁଟକ ଘଣ୍ଟା ସାହାଯ୍ୟରେ ମୋତେ ଦେଖି ପାରିବନି ତା ପରେ ତୁ ଥରେ ମାହେଶ୍ୱରୀ ବଗିଚାକୁ ଯିବୁ । ସେଠି ଶ୍ୟାମଳୀ ପେଚକ ନାମରେ ଅଛି ଗୋଟିଏ ବଡ଼ ଚଢ଼େଇ । ତା ପାଖରେ ଅଛି ଖଣ୍ଡେ ଆୟୁପୋଥି । ଦୁନିଆରେ ଯେତେ ଅସୁର ଅଛନ୍ତି ସମସ୍ତଙ୍କ ମୃତ୍ୟୁ ଭେଦ ସେହି ପୋଥିରେ ଲେଖାଅଛି ।

ଶ୍ୟାମଳୀ-ପେଚକ ଭାରି ଦୟାଳୁ । ତୋ ଦୁଃଖ ଦେଖିଲେ କେବେ ଏଡ଼ାଇ ଦେବନି । ସେତେ କଷ୍ଟ ହେଉ ପଛେ ଅସୁରର ମରଣ ଭେଦ ବତାଇ ଦେବ ।

ପଚ୍ଚରିଲେ—ରାଜାପୁଅ ଆଖି ପାଇବେ କିପରି ?

କହିଲେ—ସେ ଭାରି ସହଜ । ତୁ ଯୋଉ ମାୟାପୁରୀରେ ଅଛୁ, ସେହି ପୁର ଭିତରେ ଯେଉଁ ପାଉଁଳ ପୋଖରୀ ତା'ର ଭିତରେ ଅଛନ୍ତି କଇଁଛ ଦେବୀ-ଭଗବତୀ । ଗୋଟିଏ ରାତି ତା'ର ପାଖରେ ଉପାସନ କରି କୁକୁଡ଼ା ଦଣ୍ଡିଟିଏ ଦେଲେ ସେ ପ୍ରସନ୍ନ ହୋଇ ବର ମାଗିବ । ତୁ ଆଉ ଅନ୍ୟ ବର କିଛି ନ ମାଗି କହିବୁ ରାଜା ପୁଅକୁ ଗୋଟିଏ ଆଖି ଲଗାଇ ଦେବ ।

ପଚ୍ଚରିଲା—ରାଜାପୁଅକୁ ପାଇବ କିପରି ?

ଗଣକଙ୍କ ପାଖରେ ବସିଥିବା ପାଞ୍ଚପକ୍ଷୀଙ୍କ ଡେଣାରୁ ପାଞ୍ଚଟି ପକ୍ଷୀ ଓପାଙ୍କ ଆଣି ତା ହାତରେ ଦେଲେ । କହିଲେ, ଏହାକୁ ନେଇ ତୋ ଘୋଡ଼ା ମୁଣ୍ଡରେ ଖୋସିବୁ । ତେଣିକି ଅ.ଉ କିଛି

ଭାବିବାକୁ ନାହିଁ । ଯେତେବେଳେ ଯୋଉ ଜାଗାକୁ ଯିବାପାଇଁ ଦର୍କାର ପଡ଼ିବ, ସେତେବେଳେ ତା କାନପେ ସେହି ଜାଗାରେ ନାଁ କହିବୁ । ତା ପରେ ତାକୁ ବାଟ ଦେଖାଯିବ । ସେ ଆଉ ବାଉଳା ଭାଉଳା ନ ହୋଇ ଠିକ୍ ଜାଗାରେ ତୋତେ ପହଞ୍ଚାଇ ଦେବ । ଏହା କହି ଖଣ୍ଡେ ଋର୍ଙ୍ଗିନ୍ ଜାମା ଆଣି ଦେଲେ । କହିଲେ—ଯାର ନାମ ଗୋବର୍ଦ୍ଧନ ଜାମା । ସମୁଦ୍ର ଆଉ ପାରକ ଗଲମାତ୍ରେ ଏଖଣ୍ଡ ଦେହରେ ଗଳାଇ ପକାଇବୁ । ତା ନହେଲେ ଅସୁର ତା ଘଣ୍ଟା ସାହାଯ୍ୟରେ ଦେଖି ପକାଇଲେ ସର୍ବନାଶ ।

ପଷ୍କରିଲ—ରଜାପୁଅ ଅଛନ୍ତି କେଉଁଠି ?

କହିଲ—ବାଘ ଘରେ ଲେ ମୀନା ବାଘ ଘରେ ଅଛୁ । ବାଘ ଛୁଆଙ୍କ ସାଙ୍ଗରେ ଖେଳ କସରତ କରି ଖୁବ୍ ପହିଲମାନ ହୋଇଛୁ । ତୋତେ ନ ଦେଖିଲେ ସେ ମୋଟେ ସେଠାରୁ ଆସିବନ କ ବାଘ ବଂଶ ତାକୁ ଛାଡ଼ିବେନ ।

ମୀନା ଏଥର ବିଦାୟ ନେବାପାଇଁ ଗଣକଙ୍କୁ ଦଣ୍ଡବତ କରି ପାଦଧୂଳି ଆଣି ମୁଣ୍ଡରେ ମାରିଲ । ଗଣକ ତାକୁ ଆଶୀର୍ବାଦ କରି ବିଦାୟ ଦେଲନ୍ତି ମହାତ୍ମାଙ୍କ ନେଇ ଯଥାସ୍ଥାନରେ ପହଞ୍ଚାଇ ଦେଲେ ।

ମନରେ ଆଉ ପୂର୍ବ ପରି ଦୁଃଖ ନଥାଏ । କିପରି କାର୍ଯ୍ୟ ହାସଲ କରିବ, ସେଥିପାଇଁ ଖୁବ୍ ବ୍ୟଗ୍ର ହୋଇ ଉଠିଛୁ । ତେଣୁ ଆଉ ମୁହୂର୍ତ୍ତଟାଏ ବିଳମ୍ବ ନ କରି ଘୋଡ଼ା ମୁଣ୍ଡରେ ପଞ୍ଚପକ୍ଷୀ ପରି ବାନ୍ଧି କହିଲ—ଏଥର ଆଗେଇ ଚାଲ ବାବା ! ଶ୍ୟାମଳୀ ପେଟକ ପାଖକୁ ।

ଘୋଡ଼ା ନିଜ ଭାଷାରେ ସମ୍ମତି ଜଣାଇବା ପରି ଭାବ ଭଙ୍ଗୀ ଦେଖାଇବାରୁ, ମୀନା ତା କାନରେ କହିଲ—ଚାଲଭାଇ ! ମାହେଶ୍ୱରୀ ବଗିଚାକୁ ।

ଘୋଡ଼ା ଆସନ ଦେଲା । ମୀନା ତା ପିଠିରେ ବସିବା ମାତ୍ରେ ଉଠିଲା ଉପରକୁ । ଦେଖୁ ଦେଖୁ ପୁଣି ସାତ ସମୁଦ୍ର ପାର୍ ହୋଇ ଆଉ ପାଖରେ ପହଞ୍ଚିଲେ । କୂଳେ କୂଳେ ଆହୁରି ଅନେକ ବାଟ ଗଲାପରେ ପଡ଼ିଲା ଖଣ୍ଡେ ବଗିଚା । ସେଠି ଆମ୍ବ, ପଣସ, କଦଳୀ, ସେଓ, ନାସପାତି, ବେତନା, ଅଙ୍ଗୁର୍ ଇତ୍ୟାଦି ନାନା ପ୍ରକାର ଫଳ ପାଚି ଝୁଡ଼ୁଛି । ଜାତିଜାତିକା ବାସ ଫୁଲର ମହକରେ ଦିଗ ଚହଟୁଛି । ଅସଂଖ୍ୟ ଚଢ଼େଇ, ମହୁମାଛି, ଭଅଁର ଆସୁଛନ୍ତି ଯାଉଛନ୍ତି । କଳ କାକଳୀରେ ସ୍ଥାନଟା କୋଳାହଳ ହୋଇ ଉଠୁଛି ଖୁବ୍ ଯୋରରେ । ହେଲେ ଜନମାନଙ୍କ ଦେଖାଯାଉ ନାହାନ୍ତି ।

ଘୋଡା ଯାଇ ସେହି ବଗିଚା ପାଖରେ ଓହ୍ଲାଇ ପଡ଼ିଲା । ବଗିଚା ଭିତରକୁ ଯିବା ପାଇଁ [ମର୍ମର] ଶଙ୍ଖମଲମଲ ପଥରରେ ତିଆରି ହୋଇଛି ଗୋଟିଏ ରାସ୍ତା । ସେହି ରାସ୍ତାରେ ମୀନା କାଠୁବାଟ ଆଗେଇ ଗଲା ।

ବଗିଚା ମଝିରେ କଳା ମୁଗୁନି ପଥରର ଗୋଟିଏ ସ୍ତମ୍ଭ । ସ୍ତମ୍ଭ ଉପରେ ମର୍ମର ପଥରର ଗୋଟିଏ ସୁନ୍ଦରକଣିଆ ଖମ୍ବ । ଖମ୍ବ ଉପରେ ଅଷ୍ଟରନ୍ନ ଜଡ଼ିତ ଗମ୍ବୁଜ । ସେହି ଗମ୍ବୁଜ ଉପରେ ବସିଛି ଗୋଲ ମୁହଁ ଗୋଟାଏ ବଡ଼ ଚଢ଼େଇ । ଦେହଟା ତାର ଦେଖା ଯାଉଛି ଉଦୟ ହୋଇ ଆସୁଥିବା ସୂର୍ଯ୍ୟପରି ଖୁବ୍ ଲାଲ ଟହଟହ ।

ମୀନା ଯାଇ ଖୁବ୍ ଭକ୍ତିରେ ମୁଣ୍ଡିଆଟିଏ ପକାଇଲା ।

ଶ୍ୟାମଳୀ ପଚାରିଲା—ଆପତ୍ତି କ'ଣ ?

ମୀନା ଆଖିରୁ ଲୁହ ଗଡ଼ାଇ କହିଁ କହିଁ ହୋଇ ଗୁଡ଼ାଏ କାନ୍ଦିଲା । ତା ପରେ ଅତି କାକୁସ୍ଥ ହୋଇ କହିଲା—ମହାପ୍ରଭୁ ! ମୋତେ ଯେବେ ତୁମେ ନ ବଞ୍ଚାଇବ, ତେବେ ସଂସାରରେ ଆଉ ଭରସା ଦେବାକୁ ମୋର କେହି ନାହିଁ ।

ଶ୍ୟାମଳୀ ପଚାରିଲେ—ତୋ ଦୁଃଖ କଥା କ'ଣ କହ ।

ମୀନା ଗୋଟି ଗୋଟି କରି ତା ଦୁଃଖ କଥା ଜଣାଇ ସବା ଶେଷକୁ ଅସୁରର ମୃତ୍ୟୁଭେଦ କଥା ପଚାରିଦେଲେ ।

ତା ଦୁଃଖ କଥା ଶ୍ୟାମଳୀ ମନରେ ଦୟା ଆସିଥାଏ । ତେଣୁ ସେ ଆମ୍ଭ ପୋଥି ଖୋଲି ଦେଖିଲେ ଏବଂ କହିଲେ—

ହଣ୍ଡା ଭିତରେ ଅଣ୍ଡା
ତାକୁ ଦରକାର ଖଣ୍ଡା ।
ନୃପତି କୁମାର ଭେଣ୍ଡା
ଖାଇଥିବ ଗଜ ମଣ୍ଡା ।
ନ ଥିବ ଗୋଟିଏ ଆଖି
ବାଘ ଛୁଆ ଥିବେ ସାକ୍ଷୀ ।
ନାଗ ପରବତ ତଳେ
ହାଣି ଦେବ ନିଜ ବଳେ ।
ଦୁଇଫାଳ ହେଲେ ଅଣ୍ଡା
ମରିବ ଅସୁର ଷଣ୍ଢ ।

ଏଥିରେ ମୀନାର ଆଉ ବୁଝିବାର କିଛି ବାକି ରହିଲାନି । ମନେ ମନେ ଭାବିଲେ—ପ୍ରଭୁ ଯାହା କରନ୍ତି ପ୍ରାଣୀର ମଙ୍ଗଳ ପାଇଁ । ଅସୁରକୁ ମାରିବେ ବୋଲି ରାଜାପୁଅ ନିଜର ଆଖିଟି ହରାଇ ବୋଧହୁଏ ବାଘ ଘରେ ଅଛନ୍ତି ।

ଶ୍ୟାମଳୀ ଟିକିଏ ମୁରୁକି ହସା ଦେଇ ପଚାରିଲେ—କଣ ଭାବୁଛୁ କହିଲୁ ମା ?

ମୀନା ଟିକିଏ ଚମକିଗଲେ ପରି ହୋଇ କହିଲେ—ନା ।

ଶ୍ୟାମଳୀ କହିଲେ—ମୋ ପାଖରେ ଲୁଚାଇଲେ କ'ଣ ଲୁଚିବ କହିଲୁ ? ମୋତେ ସବୁ ତିନିକାଳର କଥା ଜଣା । ହଉ, ସେକଥା ଥାଉ । ତୁ ଯାହା ଭାବୁଛୁ, କଥାଟି ସେଇଆ । ମୋହରା

ଗଣକ ତୋ ହାତରେ ସବୁ ଦେଇଛୁ । ହେଲେ ଦେଇନ ବାଘ ବକ୍ଷ୍ୟ ।

ପକ୍ଷିରାଜ—ବାଘ ବଶ୍ୟ ନଥିଲେ କ'ଣ ହେବ ?

କହିଲା—ରାଜା ପୁଅକୁ ମୋଟେ ଆଣି ପାରିବୁନ । ଅଧିକନ୍ତୁ ବାଘଛୁଆ ଯୋଡ଼ାକ ତୋତେ ମାରି ପକାଇବେ । ତେଣୁ ମୋ ପାଖକୁ ନେଇଯା ବାଘବଶ୍ୟ-ପୋହଳା । ସେଠି ପହଞ୍ଚି ମାଈ ଗ୍ବର ବାଘକୁ ଗ୍ବଗୋଟି ଓ ପୁଅକୁ ଗୋଟିଏ ବଢ଼ାଇ ଦେବୁ ତା'ପରେ ତୋର ସମସ୍ତ କାମ ସଫଳ ହେବାର ବାଟ ଫିଟିଯିବ । ଏହା କହି ପାଞ୍ଚଟି ଲିଲ ଚହ ଚହ ପୋହଳା ତା ହାତକୁ ବଢ଼ାଇ ଦେଲା ।

ମୀନା କୁମାରୀ ସେଗୁଡ଼ିକ ଅଣ୍ଟାରେ ମାରି ବଦାୟ ନେଇ ପହଞ୍ଚିଲା ଘୋଡା ପାଖରେ । ଘୋଡ଼ା ବହୁତ ସେତେବେଳକୁ ଘାସ ଚେକିବା ବନ୍ଦ କରି ଚଙ୍ଗ ଚଙ୍ଗ ହେଲାଣି । ମୀନା କୁମାରୀର ଏତେ ଡେରି ହେଲା କାହିଁକି, ଏଥିପାଇଁ ତାର ରାଗିଲେଣି ।

ହଠାତ୍ ମୀନା ପହଞ୍ଚିଗଲା । ଘୋଡ଼ା ପିଠି ଆଉଁସି ଦେଇ କାନ ପାଖରେ କହିଲା—କାମ ସିଦ୍ଧି ହୋଇଛୁରେ ଘୋଡ଼ା ଭାଇ ! ଏଥର ତୋ ମାଲିକର ଦେଖା ମିଳିବ । ତୁ ଆଉ ହେଳା ନ କରି ଯେତେ ଚଞ୍ଚଳ ପାରୁ ଉଡ଼ିଯିଲ—ଖିଷ୍ଟଗିରି ପର୍ବତ ତଳ ତତାବାଘ ବସାକୁ ।

ପଞ୍ଚପକ୍ଷୀ ବଂଶରୁ ଘୋଡ଼ାକୁ ଅନୁହନ୍ତ ବାଟ ଘାଟ ସବୁ ଦେଖାଯାଉଥାଏ । ତେଣୁ ସେ ଅବାଟକୁ ବାଟ କରି ଉଡ଼ୁଥାଏ ପବନ ଭଳି । ଶୂନ୍ୟ ମଣ୍ଡଳରେ ଉଡ଼ିବାକୁ ବେଳକୁ ବେଳ ଭଲ ଲଗିବାରୁ ଆସ୍ତେ ଆସ୍ତେ ସେ ବହୁତ ଉପରକୁ ଉଠି ବାୟୁ ତରଙ୍ଗ ଭେଦ କରିଗଲା । ଏଥର ତରଙ୍ଗରେ ଗୋଡ଼ହାତ କାଲୁଆ ହୋଇ ଆଉ ଚଳିଲା ନାହିଁ । ନିଃଶ୍ବାସ ପ୍ରଶ୍ବାସ ବ ବନ୍ଦ ହୋଇ ଆସିଲା ।

ବିଶ୍ବାସ କଲେ କ'ଣ ? ମୀନାକୁ ମଧ୍ୟ ଭାରି କଷ୍ଟ ଲାଗିଲା । ଆଉ ମୁହୂର୍ତ୍ତିକ ଭିତରେ ଘୋଡ଼ା ଓ ସେ ଦୁହେଁ ପୋକମାଛୁ ଭଳିଆ ମରି ତଳେ ଖସିପଡ଼ିବେ । ରକ୍ଷା ହେବାର କୌଣସି ଉପାୟ ନାହିଁ କାତର ପ୍ରାଣରେ ଡାକ ପକାଇଲା—ହେ ପ୍ରଭୁ ଦେବ ଧର୍ମ ! ଏ ବିପଦରୁ ତୁମେ ଉଦ୍ଧାର ନ କଲେ ମୋର ଆଉ କିଏ ଭରସା ହେବ ।

ହଠାତ୍ ଦେଖାଗଲା ଗୋଟିଏ ଆଲୋକ । ସେ ଆଲୋକ ମଧ୍ୟରେ ପ୍ରଭୁ ଅଲେଖ ନିରଞ୍ଜନ ଏକଚକ୍ର ରଥ ଉପରେ ବସି ଉଡ଼ି ଆସିଲେ । ମୁଣ୍ଡରେ ଜଟା । ମୁହଁରେ ଧଳା ଦାଢ଼ୀ । ପରିଧେୟ ବୃକ୍ଷ ବଳ୍କଳ । ହାତରେ ତାଳପତ୍ର ଛତା । ହସ ହସ ମୁହଁରେ ଦେଖା ଦେଇ ଥରେ ମୀନା ମୁଣ୍ଡରେ ଓ ଆଉଥରେ ଘୋଡ଼ା ମୁଣ୍ଡରେ ହାତ ବୁଲାଇ ଦେଲେ—ଯାଅ ଭକ୍ତ ଏଥର ମନ ଖୁସିରେ ନିଜ ବାଟ ଧରି ଚାଲିଯାଅ । ବିପଦ ଆପଦକୁ ମୁଁ ତୁମେ ପଛେ ପଛେ ଅଛି ।

ଏଣିକି ଘୋଡ଼ା ଓ କୁମାରୀ ତଳକୁ ତଳକୁ ଖସିବାକୁ ଲାଗିଲେ । ଦେହକୁ ଆଉ କି କଷ୍ଟ ଲାଗିଲାନି । ଅଲେଖ ନିରଞ୍ଜନ ଶୂନ୍ୟ ପୁରୁଷ କ୍ଷଣକରେ ଶୂନ୍ୟ ପ୍ରଦେଶରେ ଶୂନ୍ୟ ହୋଇଗଲେ ।

ପଡ଼ିଲା ଋଷ୍ୟଗିରି ପାହାଡ଼ । ମଚ୍ଛିନ୍ଦ୍ର ବାଘ ଛୁଆଙ୍କ ସାଙ୍ଗରେ ଯାଇଛି କୋଳି ଖାଇବାକୁ । ଗୋଲାପ,ଜାମୁ ଗଛରେ ଅନେକ ଫଳ ପାଚିଥାଏ । ଛୁଆ ଦୁହେଁ ମନକଲେ ଖାଇବାକୁ ।

ମଚ୍ଛିନ୍ଦ୍ର ଗଛରେ ଚଢ଼ି ଡାଳ ହଲାଇ ଦେବାରୁ ପାଚିଲା ଫଳ ସବୁ ଗଳ ଗଳ ହୋଇ ତଳେ ପଡ଼ିଲା । ଛୁଆ ଦୁହେଁ ମନ ଖୁସିରେ ହଣ୍ଟାଳ ମାରି ଖାଇବାକୁ ଲାଗିଲେ ।

ପାଖ ଆଖରେ ସିମ୍ପାଜ ବୋଲି ଥାଏ ଗୋଟାଏ ଜଣ ମଣିଷ । ତା ଦେହରେ ସତରଟା ଅସୁରର ବଳ । ଏ କୋଳ ଜଣ ଖଣ୍ଡିକ ରଖିଥାଏ ତା ନିଜ ଦଖଲରେ । ଗୋଟିଏ ବଗଡ଼ ପିଲାକୁ ବି ପୂରାଇ ଦିଏନି । ସବୁ ପାଚିଲା ଫଳ ଯାକ ଆପେ ଖାଏ । ଏ କଥା ମଚ୍ଛିନ୍ଦ୍ରକୁ ଅଜଣା ଥିବାରୁ ସେ ଆସି କୋଳ ତୋଳୁଛନ୍ତି । ଏମିତି ବେଳେ ରାଗ ଜର ଜର ହୋଇ ସିମ୍ପାଜ ପହଞ୍ଚିଗଲା ।

ବାଘ ଛୁଆଙ୍କୁ ମାଡ଼ ଦେବାକୁ ଆରମ୍ଭ କରିବାରୁ ମଚ୍ଛିନ୍ଦ୍ର ଓହ୍ଲାଇ ପଡ଼ିଲେ ଗଛରୁ । ବାଘ ଛୁଆ ଦିହେଁ ବି ତାହାଙ୍କ କୁକୁର ପରି ତାକୁ ଘେରି ପଡ଼ିଲେ । ଖୁବ୍ ପ୍ରାଣେ ଲଢ଼େଇ ଚାଲିଲା । ହେଲେ କ'ଣ ହେବ ସିମ୍ପାଜର ହେଲା ଜୟ । ସେ ବାଘ ଛୁଆ ଦିଟା ଯାକଙ୍କୁ ଗୋଡ଼ଉଥିଲେ ମାଡ଼ିବସି ଯେତେବେଳେ ମଚ୍ଛିନ୍ଦ୍ରର ଗଳାକୁ ଚିପିଧରେ ଠିକ୍ ସେତେବେଳେ ଗୋଟିଏ ଆଲୋକ ଆସି ତା ମୁହଁରେ ପଡ଼ିଲା । ପଛେ ପଛେ ଦେଖା ଦେବେ ଜଣେ ଅଲେଖ ବାବା । କୌପୀନ ଦେହରୁ ଟିକିଏ ଛିଣ୍ଡାଇ ପକାଇ ଦେଲେ ସିମ୍ପାଜ ଉପରକୁ । ସେନ୍ତକରେ ତା ଗଳାରେ ଗୋଟାଏ ଫାଶ ଲାଗିଗଲା ଓ ପଛ ଆଡ଼କୁ କିଏ ଜଣେ ଘୋଷାଡ଼ି ନେଇ କେଉଁ ଦୂରାନ୍ତକୁ ଚାଲି ଯିବାରୁ ମଚ୍ଛିନ୍ଦ୍ର ଓ ବାଘ ଛୁଆମାନେ ରକ୍ଷା ପାଇଲେ । କିଏ ଏଭଳି ସାହାଯ୍ୟ କଲା, ଦେଖିବା ପୂର୍ବରୁ ଅଲେଖ ବାବା ଅନ୍ତର୍ଦ୍ଧାନ ହୋଇଗଲେ ।

ମଚ୍ଛିନ୍ଦ୍ର କେବଳ ତ୍ରାଣକର୍ତ୍ତାଙ୍କ ଉଦ୍ଦେଶ୍ୟରେ ନମସ୍କାରଟିଏ ଜଣାଇ ସାଙ୍ଗ ଦିହଙ୍କ ସଙ୍ଗରେ ଲେଉଟିଗଲେ ବସାକୁ । ବାଘ ବାଘୁଣୀ ଦିହେଁ ବସି ଉକୁଣୀ ଦେଖା ଦେଖି ହେଉଥାଆନ୍ତି । ଛୁଆ ଓ ମଚ୍ଛିନ୍ଦ୍ର ପହଞ୍ଚି ସବୁ କଥା ଜଣାଇଲେ ।

ବାଘୁଣୀ କହିଲା—ଏଣିକି ତୁମେ ଏହି ପାଖ ଆଖରେ ଖୋଜିବ । ଦୂରକୁ ଗଲେ ଆମକୁ କହିକରି ଯିବ । ଏ ବଣରେ କେଉଁଠି କ'ଣ ଅଛି, ସେ କଥା ସବୁ ତୁମକୁ ଅଜଣା ।

ମଚ୍ଛିନ୍ଦ୍ର କହିଲା—ଏଥର ଅନୁମତି ନେଇ ଯିବୁ । ଏହିଭଳି ମୁହଁ କଥା ମୁହଁରେ ଅଛି । ଉପରୁ ବିଜୁଳି ପରି ଖସି ଆସିଲା ଗୋଟାଏ ଘୋଡ଼ା । ତା ଉପରେ ବସିଛି ଗୋଟାଏ ମଣିଷ । ବଡ଼ିଆ ଶିକାର ଯୁଟିଲା ଭାବି ବାଘ ବାଘୁଣୀ ଖୁସିରେ ଲାଙ୍ଗୁଡ଼ ନେଇ ମୁଣ୍ଡରେ ଘଷିଲେ । ତୁଆ ଢ'ଟା ଗାଲ ଫୁଡକା ମାରି ଛକି ବସିଲେ ।

ହଠାତ୍ ମଚ୍ଛିନ୍ଦ୍ର ଚମକି ପଡ଼ି କହି ଉଠିଲା—ଏ ତ ମୋର ଘୋଡ଼ା ।

ମୀନାକୁମାରୀ ଘୋଡ଼ାରୁ ଓହ୍ଲାଇ ଓହ୍ଲାଇ କହିଲା—ହଁ ପ୍ରିୟ ! ଏ ତୁମରି ଘୋଡ଼ା । ଘୋଡ଼ାଟା ଅନେକ ଦିନ ପରେ ନିଜ ମାଲିକକୁ ପାଇ କୁକୁରପରି ଆସି ମଚ୍ଛିନ୍ଦ୍ରର ପାଦତଳେ ନେଡେଇହେଇ ପଡ଼ିଲା । ହିଁ ହିଁ ହସି ହସିକା ଗୁଡ଼ାଏ ଶୁଙ୍ଘି ପକାଇଲା ।

ସେତେବେଳକୁ ମଚ୍ଛିନ୍ଦ୍ର ଆଖିରେ ଆଖିଏ ଲୁହ । ବାଘଯାକ ଭାବିଲେ—ନିଚ୍ଛୁ ନାହିଁ, ଏ ମାଇପି ଜଣକ ଆସିଛି ମଚ୍ଛିନ୍ଦ୍ରକୁ ନେଇ ଯିବାପାଇଁ । ତେଣୁ ରାଗରେ ତଙ୍ଗ୍ ହୋଇ ଉଠିଲେ । ବୋଧହୁଏ ମୀନାକୁ ମାରି ପକାଇବା ତାଙ୍କର ଇଚ୍ଛା ।

ଏତିକିବେଳେ ମୀନା ଅଣ୍ଟାରୁ ପାଞ୍ଚୋଟି ପୋହଳା କାଢ଼ି ସମସ୍ତଙ୍କ ହାତରେ ଗୋଟିଏ ଗୋଟିଏ ଧରାଇ ଦେଲା । ବାଘଯାକ ତାର ଲାଲ ଗୋଲାପ ରୂପ ଦେଖି ଖୁବ୍ ଖୁସି ହୋଇଗଲେ । ପୋହଳାର ଯାଦୁଶକ୍ତି ତାଙ୍କ ମନକୁ ବଶୀଭୂତ କରିଦେବାରୁ ସେମାନେ ଆସି ମୀନାକୁମାରୀ ଦେହରେ ଘସିହୋଇ ବଲେଇ ପରି ଗୁଡ଼୍ ଗୁଡ୍ ହେବାକୁ ଲାଗିଲେ ।

ମଚ୍ଛିନ୍ଦ୍ର ଓ ମୀନାକୁମାରୀ ଗୋଟିଏ ଗଛମୂଳରେ ବସି ଚିଇକରୁ ନଇଁଥ ଯାଏ ସକଳ ବିଷୟ କଥାବାର୍ତ୍ତା ହେଲେ । ଦୁହିଁଙ୍କ ଆଖିରେ ଦେଖାଗଲା ଲୁହର ଝରଣା । ଘୁଣ୍ଟାଏ କୋହ । ଦୀର୍ଘ ନିଃଶ୍ୱାସ ଛାଡ଼ି ମଚ୍ଛିନ୍ଦ୍ର ପଚାରିଲା—

ତୁମେ ତ ଘରେ ଖୁସିରେ ଥିଲ କୁମାରୀ ! ମୋ ପାଇଁ ଏତେ ଦୁଃଖ କଷ୍ଟ ସହିବାର ମାନେ କ'ଣ ?

ମୀନା କହିଲା—ବନ୍ଧୁ ! ତୁମକୁ ଦେଖିଲାବେଳୁ ମୋର ପଞ୍ଚ ପ୍ରାଣ ଅର୍ପଣ କରିଛି ତୁମର ଚରଣ ତଳେ । ତୁମେ ଗ୍ରହଣ କର ବା ନକର, ତୁମ ଛଡ଼ା ଅନ୍ୟ କାହାରିକି ମୁଁ ବିବାହ କରିବିନି ।

ପଚାରିଲା—ଅସୁର କଥା ?

କହିଲା—ତା ମୃତ୍ୟୁଭେଦ ମୁଁ ଆଣିଛି । ତୁମେ ନିଶ୍ଚୟ ଅକେଶରେ ତାକୁ ମାରିଦେଇ ପାରିବ ।

ପଚାରିଲା—କପରି ?

ମୀନା ଯେପରି ବୁଝି ଆସିଥିଲା, ସେ କଥାସାକ ଗୋଟି ଗୋଟି କରି ମଚ୍ଛିନ୍ଦ୍ର ଆଗରେ ପ୍ରକାଶ କରିବାରୁ ମଚ୍ଛିନ୍ଦ୍ର କହିଲା—ପ୍ରଥମେ ତାକୁ ମାରିବା ଦର୍କାର । ପରେ ଯାଇ ଅନ୍ୟକଥା ।

ମଚ୍ଛିନ୍ଦ୍ର ବାଘ ବାଘୁଣୀଙ୍କୁ ସେମାନଙ୍କ ଭାଷାରେ ସରଳ କଥା ବୁଝାଇ ଦେଲାରୁ ସେମାନେ ବହୁତ ଖୁସି ହେଲେ ଓ ମୀନାକୁମାରୀ ପ୍ରତି ଖୁବ୍ ସ୍ନେହ ଆଦର ଦେଖାଇଲେ । ଫଳମୂଳ ଅଣାଗଲା, ସମସ୍ତେ ଖାଇଲେ । ଘୋଡ଼ା ମନ ପୂରାଇ ଘାସ ପାନ ଚରିଲା । ମଚ୍ଛିନ୍ଦ୍ର ଥୋଡ଼ାଏ ପାଚିଲା ଅଙ୍ଗୁର କୋଳା ଆଣି ତାକୁ ଖୁଆଇବା ପରେ ମୀନାକୁମାରୀ ଓ ସେ ବସି ଆହୁରି ଅନେକ କଥାବାର୍ତ୍ତା ହେଲେ ।

ସେ ଦିନଟି ମୀନା ମଚ୍ଛିନ୍ଦ୍ର ପାଖରେ ରହିଲା । ଧର୍ମକୁ ସାକ୍ଷୀ କରି ଦୁହେଁ ବିଭା ହେବାପାଇଁ ଶପଥ ନେଲେ । ତା'ପରେ

କୁଣ୍ଡଳ କେଉଁ କଥା । ପ୍ରଥମେ ତାଙ୍କୁ ମାରି ସାରିଲା ପରେ ଯାଇ ଅନ୍ୟାନ୍ୟ କଥାର ବ୍ୟବସ୍ଥା କରାଯିବ ।

ପରଦିନ ସକାଳୁ ମୀନାକୁମାରୀ ଗୁଡ଼ିଏ ଘାସ ମଞ୍ଜି ତୋଳି ପଥରରେ ବାଟିଲା । ଅଙ୍ଗୁର ଫଳ ଚକଟି ପୁର କଲା । ଶୁଖିଲା କାଠ ଗୋଟାଇ ପଥର ଚୂଲା ସାହାଯ୍ୟରେ ଗଜମୁଣ୍ଡା ତିଆରି କରି ମଚ୍ଛିନ୍ଦ୍ରକୁ ଦେଲା ଖାଇବାପାଇଁ । ଖଣ୍ଡା ନ ଥିବାରୁ ପଥର ଖଣ୍ଡେ ଘଷି ଖଣ୍ଡା ତିଆରି କଲେ । ମୀନା ବାଘ ବାଘୁଣୀଙ୍କ ପାଖରେ ରହିଲା । ବାହାରେ ଗୋଦଣ୍ଡ ଘୋଡ଼ା ପିଠି ବାଘଛୁଆ ଦୁହିଙ୍କି ନେଇ ମଚ୍ଛିନ୍ଦ୍ର ଘୋଡ଼ା ଉପରେ ବସି, କାନରେ ତା'ର କହିଲା—ଚାଲ ଭାଇ, ନାଗ ପାହାଡ଼ ତଳକୁ ।

ଦେଖୁ ଦେଖୁ ଘୋଡ଼ା ଯାଇ ନାଗ ପାହାଡ଼ ତଳେ ଓହ୍ଲାଇ ପଡ଼ିଲା । ମାତ୍ର ହଣ୍ଡା କେଉଁଠି ଅଛି ? ଖୋଜି ଖୋଜି ନାକେଦମ୍ ହୋଇଗଲା ମଚ୍ଛିନ୍ଦ୍ର । ତେବେ ସୁଦ୍ଧା ସନ୍ଧାନ ନ ମିଳିବାରୁ ହତାଶ ହୋଇ ଖଣ୍ଡେ ପଥର ଉପରେ ବସି କାନ୍ଦିବାକୁ ଆରମ୍ଭ କଲା ।

ଅକସ୍ମାତ୍ ଜଣେ ଅଲେଖ ବାବା ଦେଖା ହୋଇ ପଚାରିଲେ— କରେ ବାବା ! କାନ୍ଦୁଛୁ କାହିଁକି ?

ମଚ୍ଛିନ୍ଦ୍ର ଅସୁର କଥା କହିଗଲା ।

ବାବା କହିଲେ—ତୁ ଯେଉଁ ପଥର ଉପରେ ବସି କାନ୍ଦୁଛୁ, ସେହି ପଥରଟା ଟେକି ଦେଲେ ପାଇବୁ ।

ମଚ୍ଛିନ୍ଦ ଆଉ କିଛି ନ କହି ପଥର ଟେକିବାରେ ଲାଗିପଡ଼ିଲା । ଅଲେଖ ବାବା ଅନ୍ତର୍ଦ୍ଧାନ ହୋଇଗଲେ । ପଥରଟା ଟେକିବାକୁ କଷ୍ଟ ହେବାରୁ ବାଘଛୁଆ ଦୁହେଁ ଯାଇ ସାହାଯ୍ୟ କଲେ । ପଥର ଘୁଞ୍ଚିଗଲା । ଦେଖାଗଲା ଗୋଟିଏ ଅଦ୍ଭୁତ ସୁନ୍ଦର ମାର୍ବଲ ପଥରର

ହଣ୍ଡା ଭିତରେ ଜକଜକିଆ ବଡ଼ ଅଣ୍ଡା ରଖାଯାଇଛି । ସବୁବେଳେ ଘଣ୍ଟା ଚାଲିଲା ଭଳି ତା ଭିତରୁ ଶୁଣାଯାଉଛି ଟିକ୍ ଟିକ୍ ଶବ୍ଦ ।

ମଚ୍ଛିନ୍ଦ୍ର ଅଣ୍ଡାଟିକୁ ଆଣି ତଳେ ରଖିଲା । ବାଘଛୁଆ ଦିହିଙ୍କି ତ'ପାଖରେ ବସାଇ ଧଇଲା ଖଣ୍ଡା । ପ୍ରଭୁ ଧର୍ମ ନିରଞ୍ଜନଙ୍କୁ ନମସ୍କାର କରି ଗୋଟିଏ ଚୋଟ ଦେଲା ଯେ, ଅଣ୍ଡା ହେଲା ଦି'ଫାଳ । କୁଣ୍ଡଳକେତୁ ବୈକୁଣ୍ଠା ଘୋର ଗର୍ଜନ କରି ଶୂନ୍ୟେଶୂନ୍ୟେ ଉଡ଼ି ଆସିଲା ଓ ସେହି ଅଣ୍ଡା ପାଖରେ ପଡ଼ି ଛଟପଟ ହେଲା । ମୁହଁ ବାଟେ ପର୍ବତ ଝରଣା ପରି ଖାଲି ରକ୍ତ ପିଚକାରି ଉଠୁଥାଏ । ତା ଅବସ୍ଥା ଦେଖି ବାଘଛୁଆ ଦିହିଁ ଖୁସିରେ ନାଚି ଉଠିଲେ ଓ ମୁହଁ ଲଗାଇ ଚଁ ଚଁ କରି ପେଟେ ପେଟେ ରକ୍ତ ପିଇଗଲେ । ତା ପରେ ଘୋଡ଼ାରେ ସମସ୍ତେ ଲେଉଟିଲେ ବସାକୁ ।

ମୀନା ଓ ବାଘ ବାଘୁଣୀ ବାଟ ଚାହିଁ ବସିଥାନ୍ତି । ଏମାନେ ପହଞ୍ଚିବାରୁ ସବୁ କଥା ଶୁଣାଗଲା । ସମସ୍ତେ ଆନନ୍ଦ ହେଲେ । ମୀନା ଏକାକିନୀ ଘୋଡ଼ାରେ ବସି ଗଲା ଅଚଳ ମହାଦେଶରେ ଥିବା କୁଣ୍ଡଳ ନଗରୀକୁ । ସେଠି ଖୋଜାଖୋଜି କରି ହେନା କୁମାରୀକୁ ପାଇଲା । ଚିରଦିନ ବନ୍ଦିନୀ ଅବସ୍ଥାରେ ଥାଇ ମାଡ଼ ଖାଇ ଖାଇ ତା ଅବସ୍ଥା ଅତି ଖରାପ ହୋଇଥାଏ । ତାକୁ ସେ ଅନ୍ଧାର ଘରୁ ମୁକ୍ତ କରି ଆଗେ କିଛି ଫଳ ମୂଳ ଖୁଆଇ ସୁସ୍ଥ କଲା ପରେ ଘୋଡ଼ାରେ ବସାଇ ଲେଉଟି ଆସିଲା ବାଘ ବସାକୁ । ସମସ୍ତେ ଆନନ୍ଦ ହୋଇ ଉଠିଲେ ।

ତା ପରଦିନ ବାଘ ବଂଶକୁ ସାଙ୍ଗରେ ନେଇ ସମସ୍ତେ ଯାଇ ପହଞ୍ଚିଲେ ମାୟାପୁରୀରେ । ଅସୁର ସଖୀମାନଙ୍କୁ ବନ୍ଦିନୀ କରି ଗୋଟିଏ ଅନ୍ଧାରୁଆ ଘରେ ଚାବି ପକାଇ ଦେଇଥିଲେ । ମୀନା ଖୋଜ କରି ତାକୁ ମୁକ୍ତ କଲାପରେ ଲାଗିଗଲା ଗୋଟାଏ ଆନନ୍ଦର କୋଳାହଳ । କେମିତି କଣ ହେଲା, ଶୁଣିବା ପାଇଁ ସେମାନେ ମୀନା

ସ୍ନାନ ସାରି ବସିଲେ । ମୀନା ଗୋଟି ଗୋଟି କରି ସବୁ କଥା କହିଲା ପରେ ଗଲେ ରନ୍ଧାବଢ଼ା କରିବାକୁ ।

ସମସ୍ତେ ଗାଧୁଆ ପାଧୁଆ କରି ଖାଇଲେ । ବଢ଼ିଆ ବଢ଼ିଆ ପଦାର୍ଥ ବାଘମାନଙ୍କୁ ଖୋଇଲେ । ଗଙ୍ଗା କୂଳ ଦଗ୍ଧ ହୋଇଥିବା ଖବରରେ ଆସି ତାଙ୍କୁ ଶୁଆଇ ଦେବାରୁ ବୁଢ଼ୀ ଦଦା ବହୁତ ଖୁସି ହେଲେ । ମାଆ ବାପା କହିଲେ—ଆମେ ଆଉ ତୁମକୁ ଘୁଞ୍ଚି ବଣକୁ ଯିବୁନି ।

ରାତିକ ଗୋଟିଏ ପୂଜାର ଯୋଗାଡ଼ କରାଇ ମୀନା ଗଲା ତା ପାଇଁକି ପୋଖରୀ ପାଖକୁ । ବଣରୁ କୁକୁଡ଼ାଟିଏ ଧରି ଆଣି ବସିଲା ଉପାସନାରେ । ମନ୍ତ୍ରୀ ମଧ୍ୟ ତାଠାରୁ ପରାମର୍ଶ ପାଇ ତା ପାଖରେ ବସିଥାଏ । ସଖୀମାନେ ଧୂପ ଦୀପ ନୈବେଦ୍ୟ ଦେଉଥାନ୍ତି । ରାତି ପାହାନ୍ତା ହେଲାରୁ ପୋଖରୀର ପାଣି ଭିତରୁ ବାହାରିଲା ଗୋଟାଏ ବିମାନ । ସେ ବିମାନରେ ବସିଥିଲା କଳିଙ୍ଗ ବେଙ୍କ-ଭଗବତୀ । ତାଙ୍କୁ ଦେଖି ଦେଖି ମୀନା କୁକୁଡ଼ାଟାକୁ ବଳି ପକାଇ ରକ୍ତ ସରାଟା ତାଙ୍କ ହାତକୁ ବଢ଼ାଇ ଦେଲା ।

ଦେବୀ ରକ୍ତପାନ କରି ପଚାରିଲେ—କି ବର ମାଗୁଛୁ ମାଗ ।

ମୀନା କହିଲା—ରଜା ପୁଅକୁ ଆଖିଟିଏ ଦିଅ ।

ଦେବୀ ତତ୍‌କ୍ଷଣାତ୍ ହାତଟା ମୁଠା କରି ଫିଟାଇ ଦେଲେ । ମନ୍ତ୍ରୀର ଆଖି କଅଁଳି ଗଲା । ସମସ୍ତେ ହରିବୋଲ ଓ ହୁଳହୁଳି ଦେଉ ଦେଉ ଦେବୀ ଅନ୍ତର୍ଧାନ ହୋଇଗଲେ ।

ଏଣେ ଶୁକ୍ର ତାରା ଉଦ ଫର୍ଚ୍ଚା ଦେଖାଗଲା । ରାତି ଅନିଦ୍ରା ହେବାରୁ ସବୁରି ଆଖି ମାଡ଼ି ମାଡ଼ି ପଡ଼ୁଥାଏ । ମୀନା କହିଲା—ଚାଲ ଖିଆ ପିଆର ବନ୍ଦୋବସ୍ତ କରିବା । ସମସ୍ତେ ଗଲେ । ରନ୍ଧା ବଢ଼ାର ବରାଦ ହେଲା । ସମସ୍ତେ ମନ ଆନନ୍ଦରେ ଖାଇ ପିଇ ଟିକିଏ ଟିକିଏ ବିଶ୍ରାମ ନେଲେ ।

ଗାନ୍ଧର୍ବ ମତରେ ହେନା ଓ ମୀନା ବ’ ଭଉଣୀ ଯାକ ମଚ୍ଛିନ୍ଦ୍ରକୁ ବାହା ହେଲେ । ମାୟାପୁରରେ ଯକ୍ଷରାଣୀ ଯେତେ ଯାହା ଅମୂଲ୍ୟ ସମ୍ପଦ, ହୀରା, ନୀଳା, ମୋତି ମାଣିକ୍ୟ ରଖିଥିଲା, ସେ ସବୁ ରୁଣ୍ଡେଇ ପୁଣ୍ଡେଇ ନେଇ ମଚ୍ଛିନ୍ଦ୍ର ବାହାରିଲା ନିଜ ରାଜ୍ୟକୁ । ହେନା, ମୀନା ସଖିଗଣ ଓ ବାପବଂଶ ସମସ୍ତେ ତା ସଙ୍ଗରେ ଗଲେ । କାହାର ମନରେ ଦୁଃଖ ନ ଥାଏ । ବାଟଯାକ ହସି ଖେଳି ମଉଜ ମଜଲିସ କରି ସାତ ଦିନ ପରେ ଯାଇ ପହଞ୍ଚିଲେ ନଗର ପାଖରେ । ମହାନଦୀ କୂଳ । ଏପାରରେ ମନମୁଣ୍ଡ, ସେପାରରେ ସୁବର୍ଣ୍ଣେଶ୍ୱର । ସ୍ଥାନଟାର ମାହାତ୍ମ୍ୟ କିଛି କମ୍ ନୁହେଁ । ମଚ୍ଛିନ୍ଦ୍ର ତାର ପ୍ରିୟବନ୍ଧୁମାନଙ୍କୁ ନେଇ ସୁବର୍ଣ୍ଣେଶ୍ୱରଙ୍କ ପ୍ରାଙ୍ଗଣରେ ପହଞ୍ଚିଲା ମାତ୍ରେ ରାଜବାଟୀରେ ଖବର ହେଲା ।

ରାଜା ରାଣୀ ଖୁବ୍ ମନ ଦୁଃଖରେ ଥିଲେ । ହଠାତ୍ ପୁଅ ଲେଉଟିବା ଖବର ପାଇ ପ୍ରେମରେ ପାଗଳ ହୋଇ ଉଠିଲେ । ପ୍ରଜା ପାଟକ ଧାଇଁଲେ ଦେଖିବାକୁ । ଘୁରିଆଡ଼େ ହୁଳହୁଳି । ଘୁରିଆଡ଼େ ହରିବୋଲ । ବାଦ୍ୟ ଧ୍ୱନିରେ ଖଣ୍ଡ ମଣ୍ଡଳ କମ୍ପମାନ କରି ପ୍ରଜାଙ୍କ ତରଫରୁ ଅନେକ ପଟୁଆର ଆସିଲା । ରଜାଘର ପଟୁଆରକୁ ପଚ୍ଛିରେ କିଏ ।

ଖୁବ୍ ଯାକଯମକରେ ପୁଅ ବୋହୂ ନଅରରେ ପଶିଲେ । ଆଉଥରେ ବାହାଘର ହେଲା । ଜାଅଣ୍ଟା ବାପକୁ ରଜାପୁଅ ବଳେଇ ପର ପୋଷା ମନାଇଛନ୍ତି ବୋଲି ସାରା ରାଜ୍ୟରେ ଚହଳ ପଡ଼ିଥାଏ । ତେଣୁ ହଜାର ହଜାର ଲୋକ ଦେଖିବାକୁ ଛୁଟି ଆଆନ୍ତି । ରାଜା ରାଣୀଙ୍କ ପ୍ରେମ ପୁଣି ଦେଖେ କିଏ । ବାହାଘର ହେଲା । ମୀନା ଯୋଗେ ମଚ୍ଛିନ୍ଦ୍ର କୁମାର ପ୍ରାଣ ପାଇଲା, ଯଶ ଉଛୁଳି ସବୁ ହେଲା । କିନ୍ତୁ କଥାରେ ଅଛି—

ବେଦେଲ୍ଲି ଥୋଇଲ ନୋହିଲ କିଛୁ
ଅଧିକାଂଶ ହେଲା ଗୃହାଳ ପୋଛୁ ।

ଏହି ନ୍ୟାୟରେ ମଚ୍ଛିନ୍ଦ୍ର ଭଲ ପାଇଲା ବେଶି ହେନା କୁମାରୀକୁ । ସେଥିପାଇଁ ମୀନାର କିଛି ଦୁଃଖ ନ ଥାଏ । ବଡ ଭଉଣୀ ଓ ସ୍ୱାମୀ ସେବାରେ ତ୍ରୁଟି କରିବାର ନୁହେଁ । ତେଣୁ ସେ ମନକଥା ମନରେ ମାରି ଦିନ ବିତେଇବାରେ ଲାଗିଲା ।

ସେଦିନ ରାଜା ଭୋଜ ଦେଇଥାନ୍ତି । ସାରା ରାଇଜର ଲୋକେ ଖାଇ ପିଇ ବୋହୂ ଦେଖି ଖୁବ୍ ପ୍ରଶଂସା କଲେ ।

ପଣ୍ଡିତ ଆସି ପଚାରିଲେ—ଯୁବରାଜ ! ତୁମ ଦୁଇ ଭାର୍ଯ୍ୟାଙ୍କ ମଧ୍ୟରୁ ତୁମକୁ ଯୋଉ ଜଣକ ବଞ୍ଚାଇଲା, ତାକୁ ଟିକିଏ ମୁଁ ଦେଖନ୍ତି ।

ମଚ୍ଛିନ୍ଦ୍ର ଯାଇ ମୀନାକୁ କହିଲା ।

ମୀନା କହିଲା—ପଛକଥା କ'ଣ ଆଉ ତୁମର ମନେ ଅଛି ?

ମଚ୍ଛିନ୍ଦ୍ର—ମନେ ନାହିଁ କ'ଣ ପାଶୋରି ଗଲଣି ?

ମୀନା—ଯାଅ ହେନା ଦେଇକି ପଚାରିବ ।

ଅଳ୍ପ ଦୂରରେ ଠିଆ ହୋଇ ପଣ୍ଡିତେ ସବୁ କଥା ଶୁଣୁଥିଲେ । ତେଣୁ ତାଙ୍କ ମନରେ ଟିକିଏ ଖଟକା ଲାଗିଲା । ସେ ହଠାତ୍ କହିଲେ—ଶୁଣ ଯୁବରାଜ ! ଭାରି ବିଶ୍ୱାସଘାତକ ପୁରୁଷ ତମେ । ମୀନା ପରି ଝିଅ ତୁମ ହାତ ଧରି ବଡ଼ ଭୁଲ କରିଛି ।

ନିଜ ଜୀବନକୁ ତୁଚ୍ଛ ମଣି ନାରୀ
ସହି ଯାତନା ଅପାର,
ପ୍ରେତ ଭୂତ ପୁର ଫେରାଇ ଆଣିଲା
ପ୍ରିୟ ପରାଣ ଯାହାର ।

ସେହି ପୁଣି ଭାବେ   ଭୋଗ ବିଳାସରେ
ବୁଲିଇ ନଜର ସହି
ରୂପମାଦକରେ   ଅଜ୍ଞାନ ଅନ୍ଧାରେ
ହୋଇଛୁ ପୀରତି ମତ୍ତ ।
ଏଣୁ ଜାଣିଥିବ   ପୁରୁଷ ଜାତିକି
ବିଶ୍ୱାସ ନ ଦିବ କେହି,
ଭ୍ରମର ପରିସେ   ନୂଆ ଫୁଲ ଦେଖି
ପୁରୁଣା ଭୁଲନ୍ତି ସେହି ।

ପଣ୍ଡିତଙ୍କ କଥା ମଚ୍ଛିନ୍ଦ ଏଭଳି ଆଘାତ କଲା ଯେ ସେ ଆଉ ସିଧା ସଳଖ ମୁଣ୍ଡ ଉଠାଇ କଥା କହି ପାରିଲେନି । କଥାଟା ସରି ଯିବାରୁ ମୁଁ ଧୀରେ ଧୀରେ ବୁଲି ଆସି ଦାଣ୍ଡରେ ପାଟି କରି କହିଦେଲି—

ସରିଗଲା ଆଜି ଏହି କାହାଣୀ
ଆଗେଇ ବୁଲିଛୁ ପାଠ ସାହାଣୀ
ସ୍ୱାଧୀନ ଦେଶର   ପୁଅ ହୋଇ ଜନ୍ମ
ଅନାଇଛ ବଲ ବଲ । ୧ ।

ଜାଗି ଉଠ ଆଉ ମାତି କରି
ଜାତୀୟ ପତାକା ହାତେ ଧରି
ଅନ୍ୟାୟ ଅନୀତି ଦଳି ଦିଅ
ଦେଶ ଭାଗ୍ୟ ତୋରି ହାତେ ନିଅ
ଯୋଜନା ହେଉ ସଫଳ
ଗାଆଁ ଗହଳିରୁ   ଦୁଃଖ ଦୂର ହୋଇ
ସୁଖ ଗଛେ ଫଳୁ ଫଳ । ୨ ।

କଥାରେ ନଥିଏ ବଡ଼ ମଜ୍ଜା
ପିଲାଏ ଖାଇବେ ଖଣ୍ଡ ଖଜା
ଗଡ଼ଜାତେ ଥିଲେ ଯେତେ ରାଜା
ସବୁଯାକ ଏବେ ହେଲେ ପ୍ରଜା
ଧନ୍ୟ ସେ କରମ ଗୃନ୍ଦ
ସତ୍ୟ ଅହିଂସାର ଡୋରଖଣ୍ଡେ ଯେଣୁ
ନକଲା ଉପର ଫାନ୍ଦ । ୩ ।

—※—

ବଗୁଲୀର କଥା ଶୁଣିସାରି ବଗ ଟିକିଏ ମୁରୁକି ହସିଦେଇ କହି ପକାଇଲା—ତୋ କଥା ଗୁଡ଼ାକ ଖାଲି ପୁରୁଣାକାଳିଆ କଥା । ତୁହେଁ ଲୋ ବଗୁଲୀ

ବଗୁଲୀ କହିଲା—ମୋର ପୁରୁଣାକାଳିଆ ହେଉ । ତୁ ଯାହା କହିବୁ, ନୂଆ କାଳିଆ କଥା କହ ।

ବଗ କହିଲା—ଶୁଣ ।

କହିବ କହିବ ଅସଲ କଥା ଲୋ ବଗୁଲୀ ଶୁଣିବୁ ବସି
କପାଳ ଦୋଷକୁ ଆମ୍ଭ ଗଛଟାରେ କାରଙ୍ଗ ଧରିଲା କସି ।
ଏହି ଦେଶ ଦିନେ ଥିଲା ଆମର ଶୌର୍ଯ୍ୟ ବୀର୍ଯ୍ୟରେ ଭରା
ତୂର୍ଯ୍ୟ ନାଦରେ ସୂର୍ଯ୍ୟ ଚମକାଇ ଥରୁଥିଲେ ଚନ୍ଦ୍ର ତାରା ।
ବୋଇତରେ ବସି ଏ ଦେଶ ବଣିକ ଚଇତ ପବନେ ଭାସି
ଲୋହିତ ସାଗର ସେ ପଟରୁ ଯାଇ ଆଣୁଥିଲା ଧନ ରାଶି ।
ଏହି ଦେଶ ପୁଅ ଗୃଙ୍ଗି ଖଣ୍ଡିଆ ଲୋ ପହିଲି ବପ୍ଲବ ନେତା
ଦଳବେହେରାଙ୍କ ଆଦର୍ଶରେ ଗୋରା ବନ୍ଧୁରକ ମୁହଁ ଶେତା ।
ଏହି ଦେଶ ପୁଅ କବି ଜୟଦେବ ଗୀତ ଗୋବିନ୍ଦ ଗାଇଲେ
ଜଗନ୍ନାଥ ଦାସ ଭାଗବତ ପଦ ନବାକ୍ଷରୀରେ ଥୋଇଲେ ।

ଶ୍ରୀ ଶାରଳା ଦାସ ଦେଖି ଦେଇଗଲେ ଅଠର ପର୍ବ ଭାରତ
ଭକ୍ତ ଉପେନ୍ଦ୍ର କବିକୁଳ ଚନ୍ଦ୍ର କବିତାଟି ସାରସ୍ୱତ ।

ଏହି ଦେଶ ମାଟି ପୁଣ୍ୟ ମାଟି ବୋଲି ଜଗତ ଯାକର କାମ୍ୟ
ଏହି ଦେଶ ମାନ ଶଇଳ ଚୂଳରେ ଉଡ଼େ ଧ୍ୱଜା ମୈତ୍ରୀ ଶାମ୍ୟ ।

ଏହି ଦେଶ କାଳ-ବକ୍ଷରେ ହୋଇଛି ମୂକସାକ୍ଷୀ ରୂପେ ଠିଆ
କଳା କଉଶଳେ କୋଣାର୍କ ମନ୍ଦିର ଦେଖି ଜଳୁସଇ ହିଆ ।

ଆମ ଦେଶ ମଣି ଉତ୍କଳ ମଣି ସେ ତ୍ୟାଗୀ ଗୋପବନ୍ଧୁ ଦାସ
ଆମ କୂଳ-ବୃଦ୍ଧ ମଧୁସୂଦନଙ୍କୁ ଶ୍ରଦ୍ଧାଞ୍ଜଳି ଦେବା ଆସ ।

କହିଲେ ବଗୁଲି ସରିବ ନାହିଁ ସେ ଓଡ଼ିଆଙ୍କ ଗୁଣ ଗ୍ରାମ
କଥା ଶୁଣିବାକୁ ଉଛନ୍ନ ହେଲଣି ତେଣେ ତୋର ମନ ପ୍ରାଣ ।

ମନ ଦେଇ ଶୁଣ କହିବି ଏଇଠୁ ତୋର ମନକଥା ଜାଣି
ଏହି ଓଡ଼ିଶାର ନୃପତି ନନ୍ଦନ ପଦ୍ମ କୁମାରୀ କାହାଣୀ ।

## ପଦ୍ମ କୁମାରୀ କାହାଣୀ

ସେକାଳର କଥାଟି ଉତ୍କଳ । ଧନଧାନ୍ୟ ଯଶ କୀର୍ତ୍ତିରେ ଭରପୂର ହୋଇ ଶତ୍ରୁ ଆଖି ଝଲସାଇ ଦେଉଥାଏ । ଦୂର ଦୂରାନ୍ତରୁ ପ୍ରତାପୀ ରାଜାମାନେ ନାମ ଶୁଣି ଭୟରେ ଥରହର ହୋଇ ଉଠୁଥାନ୍ତି । ଧର୍ମ, କର୍ମ, ଦାନ ଖଇରାତରେ ପୃଥିବୀରେ ହୋଇଥାନ୍ତି ସେ ଅଦ୍ୱିତୀୟ । ତେଣୁ ସମସ୍ତେ ଓଡ଼ିଆଙ୍କୁ ଖୁବ୍ ଖାତିର କରୁଥାନ୍ତି । ଓଡ଼ିଆ ବଣିକମାନେ ସୁଦୂର ଜାଭା ବାଲିଦ୍ୱୀପ ଇଣ୍ଡୋଚୀନରେ ବୋଇତ ବାଣିଜ୍ୟ କରି ଧନଧାନ୍ୟ ଗୋପଲକ୍ଷ୍ମୀରେ ଦେଶଟାକୁ କରିଥାନ୍ତି ଖୁବ୍ ସମୃଦ୍ଧିଶାଳୀ ।

ମହାରାଜାଧିରାଜ ଉତ୍କଳେଶ୍ୱର ଯେପରି ଉଦାର ଓ ମହତ୍, ତାଙ୍କ ରାଣୀ ତାଙ୍କଠୁଁ ବଳି । ପରର ଦୁଃଖ ଦେଖିଲେ ସହି ପାରନ୍ତିନି । ଯାହାକୁ ଦଅନ୍ତି ତା'ର ଦୁଃଖ ଦାରିଦ୍ର୍ୟ ଦୂର

କରି ଦିଅନ୍ତି । ଦୋଷୀ ଯାଇ ସତ କଥା ମାନିଗଲେ ତା'ର ଦଣ୍ଡ କଟିଯାଏ । ଗୋରୁ ବ୍ରାହ୍ମଣଙ୍କର ଅବମାନନା ଯେପରି ନ ହେବ, ଲୋକେ ବେଦକୁ ମାନି ଯେମିତି ଧର୍ମ ବାଟରେ ଚଳିବେ ସେଥିପାଇଁ ଖୁବ୍ କଟକଣା ଥାଏ । ଦେଶରେ ଏକାଙ୍ଗତନ୍ତ୍ରବର୍ତ୍ତୀ ଶାସନ ଚଳାଇବାକୁ ମହାରାଜାଙ୍କର ଇଚ୍ଛା ନ ଥିବାରୁ ପଞ୍ଚାୟତ ଶାସନ ଜାରି ହୋଇଥାଏ । କେହି କିଛି ଅପରାଧ କଲେ ମୁଖ୍ୟଲୋକମାନେ ବସି ଉଚିତ ନ୍ୟାୟ ବିଚାର କରନ୍ତି । ବିଚାର ଅଦାଲତ ପାହାଚକୁ ପାହାଚ ଘର ଗଢ଼ା ଯାଇଥାଏ । ତଳୁ ଉପର ଆଡ଼କୁ ବିଚାରଟା ଯାଇ ଯେତେବେଳେ ଶେଷ ସିଦ୍ଧାନ୍ତରେ ପହଞ୍ଚେ, ସେତିକବେଳେ ମହାରାଜା ଜାଣନ୍ତି । ବିଚାରର ମଧ୍ୟ ଚୂଡ଼ାନ୍ତ ହୁଏ ।

ଏତେଗୁଡ଼ିଏ ଧନ ସମ୍ପଦ ଥାଇ କ'ଣ ହେବ, ଗୋଟିଏ ମାତ୍ର ପୁଅଛଡ଼ା ଭଗବାନ ମହାରାଜାଙ୍କୁ ଆଉ କିଛି ଦେଇ ନଥାନ୍ତି । ତେଣୁ ମନରେ ଟିକିଏ ଅଶାନ୍ତି ଥାଏ । ହେଲେ ବୁଢ଼ାମନ୍ତ୍ରୀ କହନ୍ତି ମହାରାଜା ! ଘୁଷୁରି ଫଉଦେ ଜନ୍ମ କରେ, ବାଘ ମୋଟେ ଗୋଟିଏ । ଆପଣ ଦୁଃଖ କରିବେନି । ଆପଣଙ୍କୁ ପୁଅ ବାଘ ପିଲା ପରି । କଥାଟା ମହାରାଜାଙ୍କୁ ଓ ରାଣୀଙ୍କୁ ଖୁବ୍ ଭଲ ଲାଗେ । ତେଣୁ ସେ ତାଙ୍କୁ ଖୁବ୍ ଗୌରବ କରନ୍ତି ।

ପୁଅର ନାମ ପଦ୍ମକୁମାର । ଗୋଟିଏ ନକ୍ଷତ୍ର ଲକ୍ଷଣରେ ଷଠିଘରେ ତାଙ୍କୁ ଚଢ଼ିଥାନ୍ତି । ଓଳିଆରୁ ଷଣ୍ଢ ଗଜା ହେଲା ଭଳିଆ କୁମାର ତା ପିଲାଦିନୁ ପାଠଶାଠରେ ଜଗନ୍ନିକ୍ଷଣ ହୋଇଥାଏ । ସାଙ୍ଗମାନଙ୍କ ସଙ୍ଗେ ଖେଳ କସରତ୍, ଘୋଡ଼ାଚଢ଼ା, ଖଡ଼ଗଚାଳନା ଇତ୍ୟାଦି କରିବାରେ ଖୁବ୍ ଦକ୍ଷ । କୋଉ କଥାରେ କେହି ତାକୁ ବଳାଇପିବା ସହଜ ନୁହେଁ ।

ଭରା ଯୌବନ । ବୟସ ସତର ପୂରି ଅଠର ଚାଲୁଛି । ରାଜ୍ୟ ଲୋକେ ତା ଗୁଣରେ ମୁଗ୍‌ଧ ହୋଇଥାନ୍ତି । ଛୋଟଠାରୁ ବଡ଼ଲୋକ ପର୍ଯ୍ୟନ୍ତ ସମସ୍ତଙ୍କର ସେ ଆଦରର ପାତ୍ର ହୋଇଥାଏ । ଏତେବଡ଼ ରାଜାର ପୁଅହୋଇ ପଦ୍ମକୁମାର ମନରେ ଟିକିଏ ହେଲେ ଗର୍ବ ବି ନଥାଏ । ସାରୁ ପଢ଼ିବା ପିଲା ଦରିଦ୍ର ସଙ୍ଗେ ମିଶି-ଯାଏ । ସେ ସମସ୍ତଙ୍କ ଦୁଃଖରେ ସମାନ ଦୁଃଖୀ ହୁଏ । ସମସ୍ତଙ୍କ ସୁଖରେ ସମାନ ସୁଖୀ ହୁଏ ।

ପୁଅ ଯେତେବେଳେ ଯାହା ମନ କରେ ରାଜା ତାହା ପୂରଣ କରିବାକୁ କୁଣ୍ଠିତ ହୁଅନ୍ତିନ । ମନ୍ତ୍ରୀପୁଅ ଓ କଟୁଆଳ ପୁଅଙ୍କ ସଙ୍ଗେ ତାର ଘନିଷ୍ଠ ସାଙ୍ଗ । ଯୁଆଡେ ଯାଆନ୍ତି ତିନିଜଣଯାକ ସାଙ୍ଗ ହୋଇ ଯାଆନ୍ତି । ଖାଇବା ପିଇବା ସବୁ ଏକା ସାଙ୍ଗରେ । ମୋଟଉପରେ କହିବାକୁ ଗଲେ କ୍ଷୀର ନୀର ଅପେକ୍ଷା ସେମାନଙ୍କ ପ୍ରୀତି କୌଣସି ଗୁଣରେ କମ୍ ନୁହେଁ ।

ଦିନେ ତିନି ସାଙ୍ଗ ଯାଇ ସନ୍ଧ୍ୟାବେଳେ ମହାନଦୀ ପଠାରେ ବୁଲୁ ବୁଲୁ କଟୁଆଳ ପୁଅ କହିଲା-ନଈର ଦୃଶ୍ୟ ତ ଏତେ ସୁନ୍ଦର, ସମୁଦ୍ରର ଦୃଶ୍ୟ କେତେ ସୁନ୍ଦର ନ ହୋଇଥିବ ?

ମନ୍ତ୍ରୀପୁଅ କହିଲା—କୁମାର ଯେବେ ମନ କରନ୍ତେ ତେବେ ବୋଇତରେ ବସି ଦିନାକେତେ ସମୁଦ୍ର ଭିତରେ ବୁଲାବୁଲି କରି କେତେ ନୂଆ ନୂଆ କଥା, ନୂଆ ଦ୍ୱୀପ, ଉପଦ୍ୱୀପ ଦେଖିବାକୁ ମିଳନ୍ତା । କେତେ ପ୍ରକାର ଜୀବଜନ୍ତୁ ଓ କେତେପ୍ରକାର ଅନ୍ୟ ଦେଶୀୟ ଲୋକଙ୍କ ସମ୍ପର୍କରେ ଆସିବାକୁ ପଡ଼ନ୍ତା ।

ପଦ୍ମକୁମାର କହିଲା—ବାସ୍ତବିକ୍ ତୁମ୍ଭେମାନେ ଯାହା କହୁଛ ତାହା ଅକ୍ଷରେ ଅକ୍ଷରେ ଠିକ୍ କଥା । ପୁରୁଷ ପିଲା ହୋଇ ଦେଶ ବିଦେଶ ବୁଲି ନ ଦେଖିଲେ ବିବେକ ଜ୍ଞାନର ବଢ଼ିବ କିପରି ? ଆଚ୍ଛା, ତୁମ୍ଭେମାନେ ଯିବାପାଇଁ ପ୍ରସ୍ତୁତ ହୁଅ ।

ମୁଁ ବାପାଙ୍କୁ ଜଣାଇବ । ଆଜଠୁଁ ସାତଦିନ ମଧ୍ୟରେ ଆମେ ଝିଏସ୍ଟେ ଜଳଯାତ୍ରା କରିବା ।

କଥା ଶୁଣି ସମସ୍ତେ ଆନନ୍ଦରେ ମାତି ଉଠିଲେ । ଖେଳ କୌତୁକ ବି ସୁଲଲା । ତା'ପରେ ଗଲେ ଘରକୁ ।

ମନକଥ ମନରେ ରଖି ପଦ୍ମକୁମାର ଯାଇ ଖଣ୍ଡିଏ ଦଉଡ଼ିଆ ଖଟ ଉପରେ ବନା ପାଣଶୁଆରେ ଶୋଇ ପଡ଼ିଲେ । ଏ କଥା ନଅରର କୌଣସି ଲୋକକୁ ଜଣା ନାହିଁ । ସଞ୍ଜ ବେଳ ହେଲାରୁ ଖୋଜା ଚାଲିଲା । ରାଜା ଠାଆରେ ବସି ଥାଆନ୍ତି । ଦାସୀମାନେ ଯାଇ ଖୋଜା ଖୋଜ କରି ସୁଅକୁ ପାଇଲେ ଦଉଡ଼ିଆ ଖଟ ଉପରେ । ଯିଏ ଯେତେ ଡାକିଲେ ମୋଟେ ଶୁଣିଲେନ କ ପଦେ ଉତ୍ତର ବି ଦେଲେନ ।

ସମସ୍ତେ ବଡ ଅଡୁଆରେ ପଡ଼ିଲେ । କଥାଟା କ'ଣ କେହି କିଛି ବୁଝି ପାରିଲେନ । ଯାଇ ରାଣୀଙ୍କ ଆଗରେ କହିଲେ । ରାଣୀ ଆସି ଡାକିବାରୁ ପଦ୍ମକୁମାର ଉଠିଲେ ।

ପଚାରିଲେ—ତୋର କ'ଣ ହୋଇଛି ପଦ୍ମ ?

କୁମାର କହିଲେ—କିଛି ନାହିଁ ମା !

ପଚାରିଲେ—ଶୁଛିଛୁ କାହିଁକି ?

କହିଲେ ତୁମେ ବାପାଙ୍କୁ କହି ଏହି ସପ୍ତାହକ ମଧ୍ୟରେ ଜଳଯାତ୍ରା କରିବା ପାଇଁ ମୋତେ ଯେବେ ଅନୁମତି ଦିଆଇ ପାରିବ, ତେବେ ଯାଇ ମୁଁ ଠାଆରେ ବସିବି । ତା ନ ହେଲେ ପ୍ରାଣ ରଖିବି ନାହିଁ ।

କଥା ଶୁଣି ରାଣୀଙ୍କ ହାଲୁକ ଶୁଖିଗଲା । ସେ କ'ଣ କରିବେ ନ କରିବେ, କିଛି ସ୍ଥିର କରି ନ ପାରି ପ୍ରଥମେ କାବା କାଠ ହୋଇ-ଗଲେ । ତା ପରେ ଯାଇ ରାଜାଙ୍କୁ ସବୁ କଥା ଜଣାଇବାରୁ ରାଜା

ନଜେ ଆସି କହିଲେ—ତୋତେ ଜଳଯାତ୍ରା କରିବାପାଇଁ ଯଥେଷ୍ଟ ସୁବିଧା ଦିଆଯିବ । ରାଜା ପୁଅ ଦେଶ ବିଦେଶ ବୁଲି ନାନାକଥା ନ ଦେଖିଲେ ନ ଜାଣିଲେ ଚଳିବ କିପରି ? ଆଚ୍ଛା ହଉ, ସେ ସବୁ କଥା କାଲି ବୁଝାଯିବ । ବର୍ତ୍ତମାନ ତୁ ଯାଇ ଖିଆ ପିଆ କର ।

ରାଜାଙ୍କ ମୁହଁରୁ ଏପରି କଥା ଶୁଣି ପଦ୍ମକୁମାର ଗଲେ ମଣୋହି କରିବାକୁ । ମନ୍ତ୍ରୀପୁଅ, କୋଟୁଆଳପୁଅ ବି ଆସି ପାଖରେ ବସିଲେ ।

ପଦ୍ମକୁମାର କହିଲେ—ସମସ୍ତଙ୍କ ପାଇଁ ଠାଆ କର । ସେହି କଥା ହେଲା, ତିନି ସାଙ୍ଗଯାକ ଏକା ସାଙ୍ଗରେ ଖାଇ ବସିଲେ । ମହାରାଜା ଅନୁମତି ଦେଇଥିବା କଥା ପକାଇ ଖୁବ୍ ଖୁସି ହେଲେ । ତା ପରେ ଗଲେ ଶୋଇବାକୁ ।

ପରଦିନ ରାଜା ମନ୍ତ୍ରୀ ଓ କୋଟୁଆଳ ଇତ୍ୟାଦି ବସି ପଦ୍ମକୁମାର ଜଳଯାତ୍ରା କରି ଯିବା କଥାରେ ଆଲୋଚନା କଲେ । ମନା କରି ଦେବାକୁ କାହାରି ଉପାୟ ନ ଥିଲା । ତେଣୁ ସେ ଏକଜିଦ୍ ଧରି ବସିଛି, ଯିବାକୁ ମନା କଲେ ପ୍ରାଣ ହରାଇଦେବ ବୋଲି । ଯାହାହେଉ ଶେଷରେ ଯିବା କଥା ସ୍ଥିର ହେଲା । ମାଝି କିଏ ଯିବ, ବୋଇତ କିଏ ଯୋଗାଇବ, ଏ ସମସ୍ତ କଥା ପାଇଁ ସଦର ଗୁମାସ୍ତାଙ୍କୁ ଖବର ଦିଆଗଲା । ଗଣକ ଆସି ଭଲ ଦିନ ଓ ଭଲ ବାର ଧରି ଦେଇଗଲେ । ଦିଅଁ ଦେଉଳମାନଙ୍କରେ ବରଣୀ କର୍ମ ଅନୁଷ୍ଠାନ କରାଯାଇ ବ୍ରାହ୍ମଣ ଓ କାଙ୍ଗାଳମାନଙ୍କୁ ଦିଆଗଲା ଭୂରିଭୋଜନ । ଦାନ ଖଇରାତ ବି ଅନେକ କରାଗଲା । ସବୁ ଲୋକମାନେ କୁମାର ତଥା ତାଙ୍କ ସାଙ୍ଗ ସାଥିମାନଙ୍କର ମଙ୍ଗଳ କାମନା କଲେ । ତା ପରେ ଦିନ ବାର ଦେଖି ପାରଦ୍ୱୀପ ବନ୍ଦର ପାଖରୁ ବୋଇତ ମେଲିଲେ ।

ଦୁଇଜଣ ମାଝି, ସାହାଯ୍ୟକାରୀ ଚାରିଜଣ, ଜଣେ ଚାକର ରାଜାପୁଅ, ମନ୍ତ୍ରୀପୁଅ, କଟୁଆଳପୁଅ ସମସ୍ତେ ମିଶି ଦଶଜଣ କଲେ ଜଳଯାତ୍ରା । ସାଙ୍ଗରେ ଖାଦ୍ୟ ପଦାର୍ଥ ଓ ଟଙ୍କା ପଇସା ଯଥେଷ୍ଟ ନେଇଥାନ୍ତି । ହସ ଖୁସିରେ ବୋଇତ ଖଣ୍ଡ ଉଚ୍ଛୁଳି-ଉଠୁଥାଏ । ଦେଖୁ ଦେଖୁ ସେମାନେ ଘାଟ ଛାଡ଼ିଲେ । ସେମାନଙ୍କୁ ଛାଡ଼ିବାକୁ ଯାଇଥିବା ଲୋକମାନେ ଓ ନିଜେ ମହାରାଜା, ମନ୍ତ୍ରୀ, କଟୁଆଳ ଆଦି ଲେଉଟି ଆସିଲେ ରାଜବାଟୀକୁ ।

ବନ୍ଦର ପାଖଆଖରେ ଥାଏ ଜଣେ ଜଳଦସ୍ୟୁ । ନାମ ତାର ହରିହର ସାମନ୍ତରାୟ । ବୋଇତ ଲୁଟପାଟ କରି ଖୁବ୍ ଧନୀ ହୋଇ-ଥାଏ । ଚାକର ତା ପାଖରେ ବହୁତ ଥାଆନ୍ତି । ବଡ଼ଖଣ୍ଡେ ବୋଇତ ଥାଏ । ବାଣିଜ୍ୟ ବ୍ୟବସାୟ କରିବା ପାଇଁ ଦେଶ ବିଦେଶକୁ ଯାଆନ୍ତି । ସମସ୍ତେ ଜାଣନ୍ତି ସେ ଜଣେ ଖାନଦାନ ସୌଦାଗର । ମହାଜାଳ ଫନ୍ଦ ଭିତରେ ଅଙ୍ଗାର ପରି କଳାଶସ ଥିବା କଥା କିଏ କାହିଁକି ବିଶ୍ବାସ କରିବ ?

ଯେତେ ଗୁଣ୍ଡା, ପହିଲମାନ, ଯୁଆଡ଼େର ସମସ୍ତେ ତା'ରି ପାଖରେ କାମ କରନ୍ତି । ଦେଖିବାକୁ ଗଲେ ସେ ଜଣେ ନର ରାକ୍ଷସ ଛଡ଼ା ଅନ୍ୟ କିଛି ନୁହେଁ ।

ସେଦିନ ସନ୍ଧ୍ୟାବେଳେ ଗୋଟିଏ ନିରୋଳା କୋଠରୀ ଭିତରେ ସାମନ୍ତରାୟ ବସିଥାନ୍ତି । ଆଗରେ ପଡ଼ିଥିବା ଟେବୁଲ ଉପରେ ରଖା ଯାଇଥାଏ ଏକ ନମ୍ବର ମହୁଲି-ସରାପ । ଚାରି ପାଖରେ ଚାରି ଜଣ ପହିଲମାନ । ଚାକରାଣୀଟି କେତେ ଗୁଡ଼ାଏ ବରା, ପକଡ଼ି, ଗୁଲୁଗୁଲା ଓ ମାଂସ ଭଜା ଆଣି ଦେଇଗଲା ପରେ ମହୁଲିର ସଦ୍-ବ୍ୟବହାର ଆରମ୍ଭ ହେଲା । ଅନେକ ପ୍ରକାର ଗଳ୍ପ ମଧ୍ୟରେ ହସ ଖୁସିରେ ଘୂଆର ଉଠୁଥାଏ । ବିଡ଼ି ଓ ଦକ୍ଷିଣୀ ଚୁରୁଟର ଧୂଆଁରେ

ପର କ୍ଷଣିକ ହୋଇ ଉଠୁଥାଏ ଧୂମାୟିତ । ଠିକ୍ ଏତିକବେଳେ ଶଙ୍କର ଆସି ଜଣାଇଲା—ଗ୍ରେଟ ଓଙ୍ଗୀ ଦ୍'ଖଣ୍ଡ ପ୍ରସ୍ତୁତ ଅଛି ।

ହରହର ଗୋଟାଏ ଆଶ୍ୱସ୍ତିର ନିଃଶ୍ୱାସ ନେଇ କହିଲେ— ଠିକ୍ ଅଛି ଭାଇ । ତୁମେ ଯାଇ ଖିଆ ପିଆ କାମ କଢ଼ାଇନିଅ । ଲକ୍ଷ୍ୟଭ୍ରଷ୍ଟ ହେଲେ ଆମେ ଚାର ପାଞ୍ଜିରୁ ଯିବା । ଏ ଶିକାର ଭାରି ବଡ଼ ଶିକାର । ଏ କଥାକୁ ଖ୍ୟାଲ ରଖି କାମ କରି ପାରିଲେ ଭାଗ୍ୟଲକ୍ଷ୍ମୀ ଆମକୁ ସୁପ୍ରସନ୍ନ ହେଲେ ବୋଲି ଜାଣ ।

ପନ୍ଦରମାନ ଚାରଜଣଙ୍କ ମଧ୍ୟରୁ ଗୋବନ୍ଦ ବଡ଼ ଚା ଢାଗଡ଼ ପାଟି ମେଲାଇ କହି ଉଠିଲା—କଛି ଚିନ୍ତାନାହିଁ ମାଲିକ । ତୁମେ ଲହରେ ମାଲପା ପକାଇ ବସ । ଏଥର ବଡାକୁ ସାଫ୍ କରି ଆଉ ଥରକୁ ବୁଢ଼ାକୁ ଉଡ଼େଇଦେବା ।

ହ୍ଵିଷ୍ଟସ୍ନ ଲକ୍ଷ୍ମଣ ବଳବେହେବା କହିଲା—ଆଉ ହେଳା କରନା ମାଙ୍ଗ ! ଏତିକବେଳେ ତାର ପିଛୁ ଧରି ଚାଲିଲେ ସବୁ ଭଣ୍ଡୁର ହୋଇଯିବ ।

ସାମନ୍ତରା କହିଲେ - ଠିକ୍ କଥା ଆଉ ହେଳା କରନା । ଶୀଘ୍ର ଶୀଘ୍ର କାମରେ ଲାଗିଯାଅ ।

ବୈଠକ ମଜ୍ଜି ଗଲା । ସାମନ୍ତରା ଅନ୍ୟ କକ୍ଷକୁ ଚାଲିଗଲା ପରେ ଏମାନେ ବାହାରିଗଲେ ସମୁଦ୍ର କୂଳକୁ ।

ପଦ୍ କୁମାର ଓ ତା'ର ସଙ୍ଗୀମାନେ ଡୋଲିଟାରେ ବସି ଖ୍ ବ୍ ମନ ମଉଜରେ ଭସି ଚାଲିଥାନ୍ତି । ନାନା ପ୍ରକାର ହାସ୍ୟ ରହସ୍ୟ କଥାବାର୍ତ୍ତା ପଡ଼ୁଥାଏ । ନାଉରୀମାନେ ପଦେ ପଦେ ଗୀତ ଗାଇ ଆହୁଲା ପକାଉଥାନ୍ତି । ଦେଖାଗଲା ଗୋଟାଏ ବାଲିବନ୍ତ । ତିନ ଚାରି କୋଶ ଆହାନ୍ତରେ ପାଣି ଭିତରୁ ମୁଣ୍ଡ ଟେକ ଠିଆ ହୋଇଛି । ଗଛ ଲତାର ଅଭାବ ନାହିଁ । ଫଳ ଭରା ଗଛ । ପ୍ରକାର ପ୍ରକାର କୋଳି ।

କେତେ ଜାତିର ଅଚହ୍ନା ଫୁଲ ମଧ୍ୟ ଫୁଟିଥାଏ । ମତ୍ସମାନ୍ଙ, ଭଉଁର ପଙ୍କକୁ ପଲ ଉଡ଼ି ବୁଲୁଥାଆନ୍ତି । ବୋଇତଟା ଯାଇ ତାର ପାଖରେ ପହଞ୍ଚିଲା । ସ୍ଥାନଟା ଟିକିଏ ମନୋରମ ହୋଇଥିବାରୁ ସମସ୍ତଙ୍କର ମନ ହେଲା ଓହ୍ଲାଇବାକୁ । ତେଣୁ ବୋଇତକୁ କୂଳରେ ରଖି ସମସ୍ତେ ଓହ୍ଲାଇ ପଡ଼ିଲେ ।

ଜଙ୍ଗଲ ଭିତରଟା ବେଶ୍ ପରିଷ୍କାର ପରିଚ୍ଛନ୍ନ ଅଛି । ଲୋକ ଯିବା ଆସିବା କରିବାରୁ ଡଗରବାଟ ବି ପଡ଼ିଛି । ଏମାନେ ମନେ କଲେ ଏହା ମଧ୍ୟରେ ନିଶ୍ଚୟ ଘରଗ୍ରାମ ଅଛି । ତେଣୁ ଆଗକୁ ଆଗକୁ ବଢ଼ି ଚାଲିଲେ ।

କିଛିଦୂର ଗଲାପରେ ଜଣେ କେହି କୁନ୍ଥାଉଥିବା ଶୁଣାଗଲା । ରାଜକୁମାର ପଚାରିଲେ—ଏ କି ଶବ୍ଦ ?

ଜଣେ ମାଝି କହିଲା—ଅଜଗର ସାପ ଯେତେବେଳେ ଜୀବଜନ୍ତୁ ଧରି ଗିଳେ, ସେତିକିବେଳେ କଷ୍ଟ ହେବାରୁ ଡରମଲା ଜୀବଗୁଡ଼ାକ ଏହିପରି କୁନ୍ଥାନ୍ତି ।

ମନ୍ତ୍ରୀପୁଅ ସାରଙ୍ଗ କହିଲେ—ଦୂର୍ ଦୂର୍, ଏ ତ ମଣିଷ କୁନ୍ଥେଇବା ଶବ୍ଦ ।

କୋଟୁଆଳପୁଅ ବସନ୍ତ କହିଲେ—ହୋଇପାରେ । ଆଶ୍ଚର୍ଯ୍ୟ କ'ଣ ? ଅଜଗର କ'ଣ ମଣିଷ ଗିଳେନା ?

ଏ କଥାଟା ସମସ୍ତେ ସମର୍ଥନ କରି ବାହାରିଲେ ସାପ ମୁହଁରୁ ପ୍ରାଣୀଟିକୁ ଉଦ୍ଧାର କରିବା ଆଶାରେ । ଶବ୍ଦଟା ଯେଉଁ ଦିଗରୁ ଆସୁଥିଲା, ଉତ୍ତମରୂପେ ଲକ୍ଷ୍ୟ କରି ସମସ୍ତେ ସେହି ଦିଗକୁ ଚାଲିଲେ ।

ଆଗରେ ଯାଉଥିବା ମାଝିଟା ବୋପାଲେ ବୋଲି କ'ପାହୁଣ୍ଡ ପଛକୁ ହଟି ଆସିବାରୁ ସମସ୍ତେ ଥମ୍ବ ହୋଇ ଠିଆ ହୋଇଯାଇ ପଚାରିଲେ—କ'ଣ ?

ସେ ଅଙ୍ଗୁଳି ସଙ୍କେତରେ ଯାହା ଦେଖାଦେଲା, ତାହା ଦେଖି ସମସ୍ତଙ୍କ କଲିଜା ଥରି ଉଠିଲା । ତାଲିଟା ମଣିଷ ହଣା ହୋଇ ପଡ଼ିଛନ୍ତି । ରକ୍ତଗୁଡ଼ାକ ଥିଲ ଥିଲ ହୋଇ ମାଟି ଉପରେ ଜମା ହୋଇଛି । ଆଉ ଜଣେ ଲୋକ ଗଛରେ ବନ୍ଧା ହୋଇଛି ଖୁବ୍ ଦୃଢ଼ ରୂପେ । ପାଟିରୁ ତା'ର ଛୁଟିଛି ରକ୍ତର ଧାର । ଆଖି ଖୋସି ହୋଇଗଲାଣି । ମୁଣ୍ଡ ତଳକୁ ଲଡ଼କ ପଡ଼ିଛି । ଗୁଣ୍ଡ ଉପରେ ବସିଛି ମସ୍ତବଡ଼ ଲୁହାକଣ୍ଟା ଗଛ ଗଣ୍ଡି ଭେଦ କରି । ବିଚାରାର ପ୍ରାଣଟା ଘୁଡ଼ି ଆସୁଥିବାରୁ ବେଦନାରେ ଏଭଳି କୁନ୍ଥାଉଥିଲା ।

ଘଟଣା ଦେଖି ସମସ୍ତେ ତାଟକା ହୋଇଗଲେ । ଏଭଳି ଗୋଟିଏ ନିର୍ଜ୍ଜନ ପ୍ରଦେଶରେ ଭୟାବହ ହତ୍ୟାକାଣ୍ଡ କାହାଦ୍ୱାରା କାହିଁକି ସଂଘଟିତ ହୋଇଛି କିଛି ସ୍ଥିର କରି ପାରିଲେ ନାହିଁ । ଏଥିଟା ସମସ୍ତଙ୍କୁ ମୁହଁମାନ କରି ପକାଇଲା । କାହାର ମୁହଁରେ ଭାଷା ନାହିଁ କି ଚକ୍ଷୁରେ ସ୍ପନ୍ଦନ ନାହିଁ । କେବଳ ଜଡ଼ ପ୍ରତିମା ସଦୃଶ୍ୟ ଠିଆହୋଇ ଅନାଇ ରହିଲେ ।

କଥାରେ ଅଛି ରଜାପୁଅର ରଜବୁଦ୍ଧି । ତେଣୁ ସେ ସମସ୍ତ ମାରିବଟା ଉପରେ ଆଘାତ ଦେଇ କହିଲା – ଅନାଇ ଠିଆହେଲେ କାହିଁକି ? ବନ୍ଦୀ ହୋଇଥିବା ଅର୍ଦ୍ଧମୃତ ଲୋକଟାକୁ ଆଗେ ମୁକ୍ତ କର । ହୁଏ ତ ଯଦି ତାର ହୋସ୍ ଥାଏ, ତା ହେଲେ ରହସ୍ୟର କିଛି ନା କିଛି ସୂତ୍ର ମିଳି ପାରିବ ।

କଟୁଆଳପୁଅ ବସନ୍ତ ଯାଇ ଲୋକଟିକୁ ମୁକ୍ତ କରିବାପାଇଁ ଚେଷ୍ଟାକଲା । କିନ୍ତୁ ସବୁ ବୃଥା । ଗଛକୁ ଲାଗି ଗୁଣ୍ଡରେ କଣ୍ଟା ପିଟା ହୋଇଛି । ଆତତାୟୀମାନେ ଜିଭଟାକୁ ବି କାଟି ନେଇଛନ୍ତି । ବସନ୍ତ ତା ପାଖରେ ପହଞ୍ଚିବା ପୂର୍ବରୁ ସେ ଚାଲି ଯାଇଥିଲା ଅମର ଧାମକୁ ।

ପଦ୍ମକୁମାର ଓ ତା'ର ସଙ୍ଗୀମାନେ କିଛି ସମୟ ସେଠାରେ ବସି ବହୁତ ଭାବିଲେ । କିଛି କୂଳ କିନାରା ନ ପାଇବାରୁ ସେହି ମୁରଦାରମାନଙ୍କ ପଟେଇର ପକେଟ୍ ଖୋଜାଖୋଜି କଲେ ।

କଣ୍ଠାପିଠା ହୋଇଥିବା ଲୋକ ପକେଟରୁ ମିଳିଲା ଖଣ୍ଡିଏ ପକେଟ ଖାତା । ସେଥିରୁ ଜଣାଗଲା—ଜଣେ ହୀରା ଜହରତ ବ୍ୟବସାୟୀ ସୌଦାଗର । ଘର ଦରୋଜାଷେହ ଆଖ ପାଖ ପଡ଼ା ଗ୍ରାମ । ବାଣିଜ୍ୟ ଶେଷ କରି ଫେରି ଆସିବା ସମୟ । ନାମ କୃପାସିନ୍ଧୁ ପଣ୍ଡା ।

ପଦ୍ମକୁମାର ମୁହଁରେ ଦେଖାଗଲା ଗୋଟାଏ ବିରକ୍ତିସୂଚକ ଅସ୍ୱନକ କ୍ରୋଧ । କହିଲା—ସମୁଦ୍ର ପଥରେ ତା ହେଲେ ସ୍ୱାତମତ ଦସ୍ୟୁବୃତ୍ତି, ହତ୍ୟା ଓ ଲୁଟ୍ ପାଟ୍ ଚାଲିଛି ।

ସାରଙ୍ଗ କହିଲା—ଏହି ତ ତା'ର ପ୍ରମାଣ ।

ପଦ୍ମକୁମାର—ଓଡ଼ିଶା ଗ୍ରୁତରେ ଏହା ଗୋଟାଏ କଳଙ୍କର ଛତ୍ର ଦାଗ—ରାଜଶକ୍ତି ଏ ସମ୍ବନ୍ଧେ ସମ୍ପୂର୍ଣ୍ଣ ନିଷ୍କ୍ରିୟ ହୋଇପଡ଼ିଛି । ତେଣୁ ବାଣିଜ୍ୟ କେନ୍ଦ୍ର ସମୁଦ୍ରପ୍ରତି ଲକ୍ଷ୍ୟ ଦିଆଯାଉ ନାହିଁ । ଯାହାହେଉ ବନ୍ଧୁଗଣ ! ତୁମ୍ଭେମାନେ ଯଦି ମୋତେ ଉତ୍ସାହ ଦେବ ତାହାହେଲେ ମୁଁ ନିଶ୍ଚୟ ଏହାର ପ୍ରତିକାର କରିବି । ନର ରକ୍ତ ଲୋଭୀ ଦସ୍ୟୁଦଳକୁ କରାୟତ୍ତ କରି ଫାଶୀ କାଠରେ ଝୁଲାଇଦେବି । ଓଡ଼ିଶାର ସମୁଦ୍ର ବକ୍ଷରେ ପୁଣି ଥିର ଶାନ୍ତି ବିରାଜି ଉଠିବ ।

ସମସ୍ତେ ପଦ୍ମକୁମାରର ଏ ସତ୍ସାହସପ୍ରତି ସ୍ୱାଗତ ଜଣାଇ ତା ବିଚାରକୁ ଖୁବ୍ ତାରିଫ୍ କଲେ । ଏହି ସମୁଦ୍ର ଯାତ୍ରା ମାଧ୍ୟମରେ ନିଜ ନିଜର ପ୍ରାଣକୁ ବରଂ ବିପନ୍ନ କରାଯିବ; କିନ୍ତୁ ଦସ୍ୟୁଙ୍କୁ ଉପଯୁକ୍ତ ଶିକ୍ଷା ଦିଆଗଲେ ଦିଆଯିବ ବୋଲି ସମସ୍ତେ ଶପଥ ନେଇ ବାହାରିଲେ ବୋଇତ ପାଖକୁ ।

ଦେଖାଗଲା ସେହି ଝାପୁର ଅନ୍ୟ ପଟରୁ ଖଣ୍ଡେ ଗ୍ଲେଟ ପାଲ-ଦେଇ ଡଙ୍ଗୀ ଖୁବ୍ ଦ୍ରୁତ ବେଗରେ କୂଳ ଛାଡ଼ୁଛି । ରହସ୍ୟଟା ମୂର୍ତ୍ତିମାନ ହୋଇ ଉଠିଲା । ଏହି ଯେ ସେ ଆତତାୟୀମାନଙ୍କର ଡଙ୍ଗୀ ଏଥିରେ କୌଣସି ସନ୍ଦେହ ନାହିଁ ବୋଲି ଖୁବ୍ ଦୃଢ଼ଭାବରେ ଘୋଷଣା କଲା ପଦ୍ମକୁମାର ।

କିପରି ସେମାନଙ୍କୁ ଗିରଫ କରାଯାଇ ପାରିବ, ଏଥିପାଇଁ ବହୁତ କଳ୍ପନା ଜଳ୍ପନା ଚାଲିଲା ପରେ ନିଜ ବୋଇତକୁ ଅତି ଦ୍ରୁତ ଗତିରେ ତା ପଛେ ପଛେ ଛୁଟାଇ ଦେଲେ ।

ଦସ୍ୟୁଦଳ ବୁଝିପାରିଲେ ଏବୋଇତ ନିଶ୍ଚୟ ଆମ୍ଭମାନଙ୍କ ସନ୍ଧାନ ପାଇଛି । ସେମାନଙ୍କର ଲୋକବଳ ଓ ଅସ୍ତ୍ରଶସ୍ତ୍ର ବଳ ଯଥେଷ୍ଟ ନ ଥିଲେ, କେବେହେଲେ ଆମ ପଛରେ ଗୋଡ଼ାଇବାକୁ ଚେଷ୍ଟା କରନ୍ତେନି । ଆମେ ଆଗରୁ ସାବଧାନ ନ ହେଲେ ନିଶ୍ଚୟ ବିପଦରେ ପଡ଼ିବା । ଏଥିପାଇଁ ସେମାନେ ପୂର୍ବ ସତର୍କ ହୋଇଗଲେ । ସବୁବେଳେ ସମୁଦ୍ର ବକ୍ଷରେ ଗତାଗତ କରୁଥିବାରୁ ପହଁରି ପାରିବାରେ ପଟୁ ସେମାନେ । ତା ପରେ ବି ବହୁଦୂର ପହଁରି ଯିବାପାଇଁ ଆବଶ୍ୟକୀୟ ଯନ୍ତ୍ରପାତି ପାଖେ ପାଖେ ରଖି ଥାଆନ୍ତି । ଏଣେ ଦେଖୁ ଦେଖୁ ସଦାଗ୍ରର ବୋଇତ ଯାଇ ଖୁବ୍ ନିକଟରେ ପହଞ୍ଚି ଗଲାଣି । ଜଣେ ଯୁବକ ଉଦ୍ୟତ ଧନୁଶର ହାତରେ ଧରି ଠିଆ ହୋଇଛି ଠିକ୍ ମଙ୍ଗ ଉପରେ । ଏତେବେଳେ ପଳାଇ ଯିବା ଛଡ଼ା ଅନ୍ୟ ଉପାୟ ଠିକ୍ ନୁହେଁ ଭାବି ଚାରିଜଣ ଦସ୍ୟୁ ଝପ୍ ଝାପ ପାଣିକି ଡେଇଁଲେ ।

ଧନୁଶର ଧରି ଠିଆ ହୋଇଥିବା ସାରଙ୍ଗ, ଧାଇଁ ଧାଇଁ ଲକ୍ଷ୍ୟ-କରି ଛାଡ଼ିଦେଲା ଦୁଇଟା ତୀକ୍ଷ୍ଣ ଶର । ସେଥିରେ ଗୋଟିଏ ମଧ୍ୟ ବ୍ୟର୍ଥ ହେଲା ନାହିଁ । ଦୁଇଜଣ ସାଷଣାକୃତି ଦସ୍ୟୁଙ୍କ ମୁଣ୍ଡ ଖପୁରୀ ଭେଦ କରିବାରୁ ସେମାନେ ଯନ୍ତ୍ରଣାରେ ଛଟପଟ ହୋଇଉଠିଲେ ।

ସେ ଅଗାଧ ସମୁଦ୍ର ପାଣି ଲାଲ ହୋଇଗଲା । ଅନ୍ୟ ଦୁଇଜଣ ଅଦ୍ଭୁତ କୌଶଳରେ ବୁଡ଼ ଚମ୍ପଟ ଦେଲେ ।

ମାଝିମାନେ ଡଙ୍ଗୀ ଖଣ୍ଡିକ ଧରି ଅନୁସନ୍ଧାନ କରିବାରୁ ମିଳିଲା ଗୋଟିଏ ସୁନ୍ଦରୀ ଯୁବତୀ ଓ ଦୁଇଟି ବାକ୍ସ ଯାହା ଜହରତ-ସହ ଲକ୍ଷାଧିକ ଟଙ୍କା । ଗୁଳିବିଦ୍ଧ ହୋଇଥିବା ଦସ୍ୟୁ ଦୁଇଟା କିଛି ସମୟ ପାଣିରେ ଛଟପଟ ହୋଇ ପ୍ରାଣହୀନ ମୃତଦେହ ଭାସି ଉଠିଲେ । ସେମାନଙ୍କ ସମ୍ବନ୍ଧେ ବେଶି କିଛି ଅନୁସନ୍ଧାନ ଆଶା ନ ରଖି ପଦ୍ମକୁମାର ଜାଣିଲା—ରମଣୀ ଜଣକଠାରୁ ସବୁ ସନ୍ଧାନ ମିଳିବ । ତେଣୁ ଡଙ୍ଗୀ ଓ ସେଥିରେ ଥିବା ଧନ ଦୌଲତ ଘେନି ଆମର ଆଗେଇ ଚାଲିଲ ।

ରମଣୀ ଜଣକ ସେତେବେଳକୁ ଏକ ପ୍ରକାର ବେହୋସ ଅବସ୍ଥାରେ ଥିଲା । ମୁହଁରେ ତା'ର ପଟି ଭିଡ଼ା ହୋଇଥାଏ । ହାତ ଓ ପାଦ ମଜବୁତ ଦଉଡ଼ିରେ ଛନ୍ଦା ହୋଇଥାଏ । ଦେହରେ ଖଣ୍ଡେ ମାତ୍ର ଅଳଙ୍କାର ନାହିଁ । ହେଲେ ଖୁବ୍ ସୁନ୍ଦରୀ । ବୟସ ପଚିଶ ଛବିଶରୁ ବେଶି ନୁହେଁ । ସୁସ୍ଥ ହେଲା ପରେ ତା ଠାରୁ ଜଣାଗଲା—ଗୁଜରାଟରେ କଣ୍ଠା ପିଟା ହୋଇଥିବା ସୌଦାଗରଙ୍କ ବିଶିଷ୍ଟ ବଦାନ୍ୟତା ପତ୍ନୀ ସେ । ନାମ ଶଚୀ ଦେବୀ । ଏ ପର୍ଯ୍ୟନ୍ତ କୌଣସି ପିଲା ପିଲାର ମା ହେବା ଭାଗ୍ୟରେ ଯୁଟିନାହିଁ । ପ୍ରତିଥର ସ୍ୱାମୀ ସଙ୍ଗେ ବାଣିଜ୍ୟ ଯାତ୍ରା କରିବା ଏକ ପ୍ରକାର ତା'ର ଅଭ୍ୟାସରେ ପରିଣତ ହୋଇଥିବାରୁ ଏଥର ମଧ୍ୟ ଯାଇଥିଲା । ବାଣିଜ୍ୟ କାରବାର ବଢ଼ାଇ ରାଜ୍ୟକୁ ଫେରିବା ବାଟରେ ଦସ୍ୟୁଦଳ ଆକ୍ରମଣ କରି ତାଙ୍କ ସ୍ୱାମୀ ଓ ମାଝିମାନଙ୍କୁ ଧରିନେଲେ । ସେ ବନ୍ଦୀ ହୋଇ ଏହି ଡଙ୍ଗୀରେ ପଡ଼ିରହିଲା । ତାପରେ କ'ଣ ହେଲା, କିଛି କହି ପାରିବନି ।

ପଦ୍ମକୁମାର କହିଲ—ପଛ କଥା ଭାବିଲେ ବେଶି କଷ୍ଟ ଲାଭ ହେବନ ମା । ତୁମର ସବୁ ଶେଷ ହୋଇ ଯାଇଛି । ବର୍ତ୍ତମାନ ଆମ ଉପରେ ଭରସା ରଖି ଆମର ସଙ୍ଗେ ଯିବାକୁ ପଡ଼ିବ । ଏ ରହସ୍ୟ ଯବନିକା ଫିଟିଣା ହୋଇ ସାରିଲେ ଆମେ ତୁମକୁ ତୁମର ଉଦ୍ଧାର ହୋଇଥିବା ଧନ ସଙ୍ଗରେ ନେଇ ଗୃହରେ ପହଞ୍ଚାଇ ଦେବୁ ।

ପଦ୍ମରେଖା—ମୋ ସ୍ୱାମୀ ?

କହିଲେ—ତାଙ୍କ କଥା ପାଶୋରି ଦେବାକୁ ହେବ ମା ! ଦସ୍ୟୁଦଳ ତାଙ୍କୁ ଜୀବନର ସେ ପାରିକୁ ପଠାଇ ସାରିଛନ୍ତି ।

ରମଣୀ ହଠାତ୍ ମୂର୍ଚ୍ଛା ହୋଇ ତଳେ ପଡ଼ିଲା । ପରେ ଖାଲି ବୁଢ଼ି ରହିଲା ଆଖି ଲୁହରେ । ଯାତ୍ରୀମାନେ ଯେତେ ସାନ୍ତ୍ୱନା ଦେଲେ ବି ତାର କାନ୍ଦଣା ମୁହୂର୍ତ୍ତକ ପାଇଁ ବନ୍ଦ ହେଲାନି ।

ବୋଇତ ଆଗେଇ ଚାଲିଲା । ଦିନ ପରେ ଦିନ ଓ ରାତିପରେ ରାତି ସମୁଦ୍ର ବକ୍ଷରେ ଅତିବାହିତ ହେଉଥାଏ । ତାରକା ଖଚିତ ନୀଳ ଗଗନର ଶୋଭା ଦେଖି ଆରୋହୀଗଣ ମୁଗ୍ଧ ହେଉଥାନ୍ତି । ନାନା ସ୍ଥାନରେ ଖଣ୍ଡେ ଖଣ୍ଡେ ବାଲି ଟାପୁରେ ଓହ୍ଲାଇବାକୁ ପଡ଼ୁଥାଏ । ହେଲେ ଲକ୍ଷ୍ୟ ଥାଏ ସେହି ଦସ୍ୟୁଦଳ ଉପରେ ।

ଦିନେ ସନ୍ଧ୍ୟାବେଳେ ଗୋଟିଏ ସାମୁଦ୍ରିକ ପର୍ବତ ପାଖରେ ବୋଇତ ଯାଇ ପହଞ୍ଚିଥାଏ । ଆରୋହୀମାନେ ମନଖୁସିରେ ବସି ପର୍ବତର ଶ୍ୟାମଳ ଶୋଭା ଦେଖୁଥାନ୍ତି । ଏମିତିବେଳେ ଖାଁ କ୍ ଅତର୍କିତଭାବେ ବି'ଖଣ୍ଡ ଡଙ୍ଗା ଆସି ତାଙ୍କୁ ଆକ୍ରମଣ କଲା । ହଠାତ୍ ଏଭଳି ଆକ୍ରମଣ ପାଇଁ ଏମାନେ ପ୍ରସ୍ତୁତ ନ ଥିଲେ । ତେଣୁ ବଣିକଙ୍କ ଭାବେ ଏପଟ ସେପଟ ହୋଇଗଲେ । ଚତୁର ଦସ୍ୟୁଦଳ

ତାଙ୍କ ଡଙ୍ଗାରୁ ଖପ୍‌ଖାପ୍ ହୋଇଁ ଚଢ଼ିଗଲେ ରଜାଘର ବୋଇତ ଉପରେ । ପୁଣି ମାରପିଟ ଧସ୍ତାଧସ୍ତି ଲାଗିଲା । ହେଲେ କ'ଣ ହେବ, ଏମାନଙ୍କର ପରାଜୟ ଛଡ଼ା ଜୟର ଆଶା ଦେଖାଗଲାନି ।

ପଦ୍ମକୁମାର ଘଟଣାକୁ ଲକ୍ଷ୍ୟ କରି ଦୁଇଜଣ ମାଝିଙ୍କୁ ଖୁବ୍ ଗୋପନରେ ଜଣାଇଦେଲା—ତୁମ୍ଭେମାନେ ସେ ରମଣୀ ଓ ଧନରତ୍ନ-ଗୁଡ଼ିକ ନେଇ ଯେତେ ଶୀଘ୍ର ପର୍ବତ ଉପରକୁ ଯାଇ ଆତ୍ମଗୋପନ କର । ଆମେ ଶେଷ ପର୍ଯ୍ୟନ୍ତ ଚେଷ୍ଟା କରିବୁ । ନ ପାରିଲେ ସମୁଦ୍ରକୁ ଡେଇଁ ଆତ୍ମରକ୍ଷାର ବାଟ କରିବୁ । ଏ କଥା ଶୁଣି ବଳବାନ ମାଝି ଦୁଇଜଣ ଧନରତ୍ନ ଓ ରମଣୀଙ୍କୁ ନେଇ ପର୍ବତର ଘଞ୍ଚ ବନଲତା ମଧ୍ୟରେ ଲୁଚିଗଲେ । ଯୁଦ୍ଧ ଉନ୍ମତ୍ତ ଦସ୍ୟୁଦଳ ଏ କଥାର ବିନ୍ଦୁ ବିସର୍ଗ ପର୍ଯ୍ୟନ୍ତ ଜାଣି ପାରିଲେନି ।

ଅନ୍ଧାର ଘଡ଼ି । ଖୁବ୍ ଜୋରରେ ଧସ୍ତାଧସ୍ତି ଚାଲିଥାଏ । ଦସ୍ୟୁଦଳ ଜଣୁଥାନ୍ତି । ଏମାନେ ସେତେବେଳକୁ ସମ୍ପୂର୍ଣ୍ଣ ପରାସ୍ତ ନ ହୋଇଥିଲେ ବି ପରାସ୍ତ ହେଲାଭଳି ଅବସ୍ଥାକୁ ଆସିଲେଣି ଦେଖି ପଦ୍ମକୁମାର ଇଙ୍ଗିତରେ ଖପ୍‌ଖାପ୍ ହୋଇ ସମୁଦ୍ରକୁ ଡେଇଁପଡ଼ିଲେ । ସମସ୍ତେ ପହଁରିବା ବିଦ୍ୟାରେ ଖୁବ୍ ଧୁରନ୍ଧର । ତେଣୁ ବଳପୂର୍ବକ ପର୍ବତ କାନ୍ଥି କଡ଼େ କଡ଼େ ପହଁରି ଚାଲିଲେ । ଦସ୍ୟୁମାନେ ବିଜୟ ଉଲ୍ଲାସରେ ମତୁଆଲା ହୋଇ ଡାକଦେଲେ—"ସାମନ୍ତବା କୀ ଜୟ ।" ଶବ୍ଦଟା ଆଉ କାହା କାନରେ ପଡ଼ୁ ନ ପଡ଼ୁ ପଦ୍ମକୁମାର ଖୁବ୍ ଧ୍ୟାନର ସହିତ ଶୁଣିନେଲା ।

ଦସ୍ୟୁଦଳ ସମ୍ପୂର୍ଣ୍ଣ ବିଜୟୀ ହୋଇବା ପରେ ପଳାତକ-ମାନଙ୍କୁ କିଛି ସମୟ ପାଇଁ ଖୋଜାଖୋଜି କଲେ । ହେଲେ ଘୋର ଅନ୍ଧକାର ମାଡ଼ି ଆସିବାରୁ କିଛି ଦେଖି ପାରିଲେନି ।

କେବଳ କୋଇଲି ହାଁଖଣ୍ଡ ନେଇ ଖୁସି ମନରେ ନେଉଟି ଯିବାକୁ ବିଦାୟ କଲେ । ଜଣେ କହିଲା—କାଲି ଏବେଳେ ସୂର୍ଯ୍ୟ ଯିବେ କୁଆଡେ ? ଖୋଜ ଖୋଜ ପଡିଛି ସେଥିପାଇଁ ମନେ ଗୋଟିଏ କେତେ ଦେଇ ଦେବାନ ଯେ ।

ତା କଥାରେ ଏଆକଯାକ ଦସ୍ୟୁ ହସି ଉଠିଲେ ଚୁଗୁନାଙ୍କ ଘରେ । ସେତେବେଳକୁ ରଜାପୁଅଙ୍କ ଜଳଧଣ୍ଡ ଗୋଟିଏ ବୁଦାତଳେ ଲେପଟେଇ ପଡିଥାନ୍ତି ।

ଦସ୍ୟୁମାନଙ୍କ ନୌକା ଯିବାର ଝାପ୍‌ସା ଦେଖା ପଡୁଥାଏ, ଅବାଜ ବି ଶୁଣା ଯାଉଥାଏ । ଏମାନେ ଯେତେବେଳେ ବୁଝି ପାରିଲେ ସେମାନେ ଖୁବ୍ ଦୂରକୁ ଚାଲି ଗଲେଣି, ସେତେବେଳେ ଯାଇ ଟିକିଏ ଶାନ୍ତିରେ ନିଃଶ୍ୱାସ ମାରିଲେ । ଲୁଗାପଟା ଝାଡ଼ି ଝାଡ଼ି କରି ନିଜ ଭିତରେ କିଛି କିଛି କଥାବାର୍ତ୍ତା ଆରମ୍ଭ କଲେ ।

ସେଦିନ କୃଷ୍ଣପକ୍ଷ ସପ୍ତମୀ । ଅନ୍ଧାରରେ ମୁହଁକୁ ମୁହଁ ଦେଖା ଯାଉ ନଥାଏ । ରାତି ଆସି ପାହାନ୍ତି ହେଲାଣି । ଅଜଣା ସ୍ଥାନ, ପୁଣି ଜଙ୍ଗଲ । ଅନନ୍ତ ସମୁଦ୍ର ମଝିରେ ଅନ୍ଧାରୁଆ ପର୍ବତ । ସେ ଯେଉଁଠି ବସିଛି, ସେଠୁ ଉଠି ଖୋଜ ପକାଇବାର ଉପାୟ ନାହିଁ । ସଙ୍ଗୀମାନେ ହାଁଫାଙ୍କ ହୋଇ ଅଛନ୍ତି । ଡାକ ହକା ହୋଇ ଅଥବା ସନ୍ଧାନ ନଥିଲେ, ମାତ୍ର ଦସ୍ୟୁଭୟରେ ତୁଣ୍ଡ ଖୋଲିବାର ନୁହେଁ । ତେଣୁ ନିଃଶବ୍ଦ ଘରେ ଅପେକ୍ଷା କଲେ ଜହ୍ନ ଆସିବାକୁ ।

ଜହ୍ନ ଉଠିଲା । ଧୀରେ ଧୀରେ ବଣସବୁ ଉଜ୍ଜ୍ୱଳ ଦେଖାଯିବା ପରେ ବଣ ଭିତରେ ଝାପ୍‌ସା ଆଲୁଅରେ ଟିକିଏ ଟିକିଏ ଆଲୋକ ଉଠିଲା । ରାଜପୁଅ ସଙ୍କେତ ଦ୍ୱାରା ମାଝିମାନଙ୍କୁ ଡାକିଲେ । ସେମାନଙ୍କ ପାଖରୁ ମଧ୍ୟ ଉତ୍ତର ମିଳିଲା ।

ଏହିପରି ଡାକ ହାକ ଭାଗ ବାଟ !ଦଉଡ଼ି 'ଦଉଡ଼ି ଦୁଇବନ୍ଧୁଙ୍କ ଏକଯୁଟ ହେଲେ । ମନରେ ଟିକିଏ ଭୟ ଆସିଲା । ହେଲେ ଚିନ୍ତା କରିଲେ—ଏ ନିର୍ଜ୍ଜନ ପ୍ରଦେଶରୁ କିପରି ଉଦ୍ଧାର ପାଇବେ । ତେଣେ ଦସ୍ୟୁମାନେ ଖବର ନେଇ ଯାଇ ନିଶ୍ଚୟ ପୁନର୍ବାର ସକାଳୁ ଆସି ବନ୍ଦ ପକାଇବେ ବୋଲି । ଏ କଥା ଭାବିଲେ ପ୍ରେମ ଠାକୁର ଉଠୁଥାଏ । ଭାବନାରେ କାହାରି ମନ ସ୍ଥିର ନ ଥାଏ ।

ପଦ୍ମକୁମାର କହିଲା—ଏ ବିପଦବେଳେ ଏକମାତ୍ର ଭଗବନ୍ତଙ୍କୁ ପ୍ରାର୍ଥନା କର । ତାଙ୍କ ଭରସା ବିନା ଆମର ଉଦ୍ଧାର ହେବା ଆଶା ଖୁବ୍ କମ । ତେଣୁ ସମସ୍ତେ ସ୍ତୋତ୍ର ପାଠକଲେ—

( ସ୍ତୋତ୍ରଂ )

ନ ମାତୁଃ ପିତୁର୍ବା ବନ୍ଧୁ ନ ଚ ଶଶ୍ୱର ଦ୍ରବ୍ୟ ବନ୍ଧୁଃ
ନଟକ୍ରନମ୍ମ କେବଳଂ ମମବଳଂ ତବାନୁଗ୍ରହମ୍ ।

ସାରଙ୍ଗ—କହିଲା—ଆରେ—ଭାଇ ! ବିପଦରେ ପଡ଼ି କେହି ଭାଙ୍ଗି ପଡ଼ନା ନା ମନକୁ ଦୃଢ଼ କରି ଈଶ୍ବରରେ ବଳ ସଞ୍ଚୟ କର । କଥାରେ କହନ୍ତି—

ରଖେ ହରି ମାରେ କୋନ,
ମାରେ ହରି ରଖେ କୋନ ?
ମାରିଲେ ମାରିବେ କଳିଆ,
ତାରିଲେ ତାରିବେ କାଳିଆ ।

ଆମେ ହାଲିଆ ହେଲେ କଣ ହେବ ! ଦମ୍ଭଧରି ରାତିଟା କଟାଇ ଦିଅ । ସକାଳ ହେଲେ ପୁଣି ଯାହା ବିଚାର କରାଯିବ । ଏହିପରି କୁଣ୍ଡ କଥା ଭିତରେ ଅଛି । ପାହାଡ଼ ଉପରୁ ଦେଖାଗଲା ଗୋଟାଏ ମଶାଲ୍-ଆଲୁଅ ।

ସମସ୍ତେ ଚାଟକା ହୋଇ ଅନାଇ ରହିଲେ । କେହି କେହି ସନ୍ଦେହ କରି କହିଲେ—ଦସ୍ୟୁଦଳ ଆମରି ଅନୁସନ୍ଧାନ

ନେବାକୁ ଆସୁଛନ୍ତି ବୋଧହୁଏ । ବଡ଼ ଛନଆ ଲାଗିଥା ଲାଗିଲା । ସମସ୍ତେ ପ୍ରାଣ ଭୟରେ ବୁଦାଛକେ ଲେପଟେଇ ପଡ଼ିଲେ । ମାତ୍ର ଅଳ୍ପ ସମୟ ପରେ ସମସ୍ତଙ୍କ ସନ୍ଦେହ ଦୂର କରି ଦେଖାଗଲେ ଛଅଛଅଜଣ ଜାଲିଆ । ସେମାନେ ଏହି ପର୍ବତର ଆରପଟେ ରହନ୍ତି । ଅଳ୍ପ କେତୋଟି ଘର । ଯୁଗ ଯୁଗ ଧରି ବସାବାନ୍ଧି ପଡ଼ିଥାନ୍ତି । ଖୁବ୍ ଗରିବ ମଣିଷ । ମୂଳ, ଶାଗ ଶବଜ ଓ ମାଛ ଖାଇ ଜୀବନ ବଞ୍ଚାନ୍ତି । ପର୍ବତ ଉପତ୍ୟକାରେ କିଛି କିଛି ରବି ଫସଲ ବି ହୁଏ । ତେଣୁ ଯାହା ତାହା ସେମାନେ ଚଳି ଯାଆନ୍ତି । ସେହି ଲୋକମାନେ ଆସିଥିଲେ ମାଛ ମାରିବାକୁ । ଦୈବାତ୍ ଦେଖା ସାକ୍ଷାତ୍ ହୋଇ ସବୁ ବିଷୟ ଜଣାଶୁଣା ହୋଇଗଲେ ।

ଗରିବ ହେଲେ କ'ଣ ହେଲା, ସେମାନଙ୍କର ହୃଦୟ ଅଛି । ବିପନ୍ନମାନଙ୍କ ଅବସ୍ଥା ଶୁଣି ଦୟା ଓ ସହାନୁଭୂତି ଦେଖାଇଲେ । ଦସ୍ୟୁମାନେ ଆସିଲେ ସେମାନେ ଜୀବନ ଦେଇ ଏମାନଙ୍କୁ ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତି ଦେଇ ସଙ୍ଗରେ ନେଇଗଲେ ନିଜ ପଲ୍ଲୀକୁ । ସେଦିନ ମାଛମରା ବନ୍ଦ ରହିଲା ।

ଏଣେ ହରି ସାନ୍ତସ୍ତ ଶିକାରି ହରା ବାପଘର ବୈଠକଖାନାରେ ବସି ଖାଲି ଗର୍ଜନ ଛାଡ଼ୁଥାନ୍ତି । ମନର ଗତି ମୋଟେ ସ୍ଥିର ନ ଥାଏ । କେତେବେଳେ ଶିକାରୀ ଦଳ ଫେରିବେ । ଶତ୍ରୁଦଳ କବଳରୁ ସ୍ତ୍ରୀର ଉଦ୍ଧାର ଓ ସେ ସ୍ତ୍ରୀଲୋକଟାକୁ ଆଣି ଦେଖାଇଲେ ଯାଇ ମନରେ ଶାନ୍ତି ଆସିବ ।

ଶିକାରୀଦଳ ଫେରିଲେ । ମନରେ ତାଙ୍କର ବିଜୟର ଫୁର୍ତ୍ତି । ହେଲେ କଣ ହେବ ସେ ଫୁର୍ତ୍ତି ବିଫଳତାରେ ପର୍ଯ୍ୟବସିତ ହୋଇଥିବାରୁ ମୁଣ୍ଡ ଉଠାଇ କଥା କହିବାକୁ ଲାଜ ଲାଗୁଥାଏ ।

ତଥାପି ତ ବୋଇତ ଛଡ଼ାଇ ଆଣିଛନ୍ତି । ବଳବାନ୍ ଶତ୍ରୁନିକଟରୁ ସେତିକ କ'ଣ ବିଜୟର ନିଶାଣ ନୁହେଁ ?

ସାମନ୍ତଙ୍କ ଜନ୍ମୁ ସନ୍ତୋଷ ହେଲେନି । ଗର୍ଜ୍ଜନ କରି କହିଲେ— ତୁମ୍ଭେମାନେ କାପୁରୁଷ । ଶତ୍ରୁକୁ ପୂରାପୂରି ଅକ୍ତ୍ୟାର କରି, ଆମ ଲୁଣ୍ଠିତ ଧନରତ୍ନ ନ ଆଣି ଫେରି ଆସିଲ । ତୁମକୁ ଟିକିଏ ଲଜ୍ଜା ବି ଲାଗିଲାନି । ଯେଉଁ ସ୍ତ୍ରୀ ଲୋକଟା ପାଇଁ ଏତେ ଘନଘଟା ଲାଗିଲା, ତା ନ ପାଇଲେ ମୋ ଜୀବନରେ ସାରା ସମୟ ପାଇଁ ଯେଉଁ ଅକଥନୀୟ ଝଡ଼ର ତାଣ୍ଡବ ଉଠିବ, ତାକୁ ଲିଭାଇବ କିଏ ?

ଦସ୍ୟୁମାନେ କହିଲେ—ସେତେବେଳକୁ ଅନ୍ଧାର ପୁରାପୁରି ଦୃଷ୍ଟି ଶକ୍ତିକୁ ଘୋଡ଼ାଇ ଦେଇଥିଲା ମାଲିକ୍ ! ଶତ୍ରୁ ଖୁବ୍ ପ୍ରବଳ । ଖୁବ୍ ଅତର୍କିତ ଭାବରେ ଆକ୍ରମଣ କରିଥିବାରୁ ସିନା ଆମେ ଜୟ କରି ବୋଇତ ଛଡ଼ାଇ ଆଣିଲୁ । ତାଙ୍କ ଜ୍ଞାତସାରରେ ଆକ୍ରମଣ କରିଥିଲେ ପ୍ରାଣ ପାଇବା କଷ୍ଟ ।

ଦସ୍ୟୁଦଳ ଯେତେ କହିଲେ—ସାମନ୍ତଙ୍କ ମନ ମୋଟେ ବୁଝିଲା ନି । ସେ ପୁଣି ଦଳେ ଦୁର୍ଦ୍ଧର୍ଷ ଦସ୍ୟୁ ନେଇ ବାହାରି ପଡ଼ିଲେ । ସମୁଦ୍ରମଧ୍ୟରେ ଅନ୍ତତଃ ଛଅଟା ନିର୍ଜ୍ଜନ ଟାପୁରେ ତାଙ୍କର ଦଳବଳ ଥାଆନ୍ତି । ଶିକ୍ଷିତ ଘୋଡ଼ା, ଅସ୍ତ୍ର ଶସ୍ତ୍ର ଥାଏ । ତେଣୁ ସେ ବିଚାରି କଲେ, ଶତ୍ରୁର ପୂର୍ଣ୍ଣ ପ୍ରତିଶୋଧ ନ ନେବା ପର୍ଯ୍ୟନ୍ତ ତାଙ୍କର ବାସ ହେବ ସମୁଦ୍ର ମଧ୍ୟରେ ।

ଧନରତ୍ନ ଅପେକ୍ଷା ତାଙ୍କର ବେଶି ଲୋଡ଼ା ସେହି ତରୁଣ ବୟସୀ ସ୍ତ୍ରୀ ଲୋକଟାର ସୁନ୍ଦର ମୁଖ ଖଣ୍ଡିକ ।

ଦିନ ପରେ ଦିନ ଓ ମାସ ପରେ ମାସ କଟି ଯାଉଛି । ଜଙ୍ଗଲୀ ପରିବାରମାନଙ୍କ ସଙ୍ଗେ ମିଶି ପଦ୍ମକୁମାରୀ ଦିନ ଅଟନ୍ତି ଖୁବ୍ ଆନନ୍ଦରେ । ହେଲେ ମନ ଭିତରେ ଜଳୁଛି ଗୋଟାଏ

ଅଶାନ୍ତିର ଶାନ୍ତି ନାହିଁ । କୌଣସିମତେ ପ୍ରବଳ ଜଳଦସ୍ୟୁ ସାମନ୍ତଙ୍କର ସର୍ବନାଶ ନ କରିବା ପର୍ଯ୍ୟନ୍ତ ଶାନ୍ତି ନାହିଁ । ମାତ୍ର ଉପାୟ କ'ଣ ?

ମହର୍ଘରୁ ଆସି କାନ୍ତାରରେ ପଡ଼ିଲା ପରେ ସେମାନେ ଆସି ଗୋଟିଏ ନିର୍ଜନ ଟାପୁରେ ଏକପ୍ରକାର ବନ୍ଦୀ ଜୀବନ ଯାପନ କରୁ-ଅଛନ୍ତି । କୌଣସି ସୁବିଧା ମିଳୁନି ଅନ୍ୟତ୍ର ଚାଲି ଯିବାକୁ । ତେଣୁ ସମସ୍ତ କଳ୍ପନା ଜଳ୍ପନା ମନ ଭିତରେ ଉଠି ମନ ଭିତରେହିଁ ଲୀନ ହେବାକୁ ଲାଗିଛି ।

ଜଙ୍ଗଲି ଲୋକମାନଙ୍କ ସଙ୍ଗେ ଆତ୍ମୀୟତା ବଢ଼ିଯିବାରୁ ଦିନେ ସମସ୍ତଙ୍କୁ ନେଇ ପଦ୍ମକୁମାର ଗୋଟିଏ ସଭା ବସାଇଲା । ନିଜର ପରିଚୟ ଜଣାଇ ଦେବାରୁ ସେମାନେ କୃତକୃତ୍ୟ ହୋଇ ତା'ର ପଦ ବନ୍ଦନା କଲେ ଓ ଆମ ରାଜାପୁଅ ଆସି ତାଙ୍କ ଗାଆଁରେ ପହଞ୍ଚିଛି ବୋଲି ବହୁତ ଆନନ୍ଦ ହେଲେ । ନିଜ ନିଜର ଜୀବନ ନେଇ ନିଷ୍ଠାପୂର୍ବ ତାକୁ ସାହାଯ୍ୟ କରିବେ ଏଥିପାଇଁ ଅଣ୍ଟା ଭିଡ଼ିଲେ ।

ପଦ୍ମକୁମାର କହିଲା—ମୋର ସଙ୍ଗୀମାନେ କିଛିଦିନ ତୁମ ଗ୍ରାମରେ ରହିବେ । ତାଙ୍କ ଉପରେ ଦସ୍ୟୁଦଳ ତରଫରୁ ଯେପରି କିଛି ଅତ୍ୟାଚାର ନ ହୁଏ, ଏଥିପାଇଁ ତୁମେମାନେ ସାହାଯ୍ୟ କରି-ପାରିବ ତ ।

ଗାଁର ମାମଲତକାର ସନା-ବୁଢ଼ା କହିଲା—ରଜାପୁଅ ! ସେଥିପାଇଁ ତମେ ମୋଟେ ଭାବନା କରନା । ଯେମିତି ପାରି ସେମିତି ଆମେ ତୁମ ଦଳକୁ ସମ୍ମାନ ରଖିବୁ । ଦସ୍ୟୁ ଛାଡ଼ ତା ବାବା ଆସିଲେ ବି ଆମ ଗାଆଁରେ ପଶି ପାରିବେନି ।

ପଦ୍ମକୁମାର କହିଲା—ଖଣ୍ଡେ ଡଙ୍ଗା କରି ମୋତେ ଓ ମୋର ସଙ୍ଗୀ କୋଳୀପୁଅକୁ ନେଇ ଏଭଳି ଗୋଟିଏ ସ୍ଥାନରେ

ପଦ୍ମଅଞ୍ଚଳ ବନ୍ଧ ଯୋଉଠି ଆମେ କୌଣସି ନା କୌଣସି ବୋଇତ ପାଇ ପାରିବୁ ।

ମଧୁସାଦାଣୀ କହିଲା—ସେ କଥା ମୋ'ଠି ରହିଲା । ମୁଁ କାଠ ପଟରେ ଖଣ୍ଡେ ଭେଳା କରିଛି । ସେହି ଭେଳାରେ ତୁମ ଦୁହିଁଙ୍କୁ ନେଇ ଏକ୍ଷଣ ଗୋଟାଏ ଚଡ଼ାରେ ପହଞ୍ଚାଇ ଦେବ ଯୋଉଠି ତୁମେ ଦୁଇ ଦିନ ଭିତରେ ଯେ କୌଣସି ବୋଇତ ପାଇ ପାରିବ ।

ଏ କଥା ଶୁଣି ପଦ୍ମକୁମାର ଖୁସି ହୋଇଗଲା । କେବଳ ସେ ଓ ସାଇଙ୍ଗ ଛଡ଼ା ଅନ୍ୟମାନେ ସେହିଠାରେ ରହିଲେ । ମଧୁ ସାଦାଣି କାଠ ଭେଳାରେ ବସି ଏ ଦୁହେଁ ବାହାରିଲେ ଭାଗ୍ୟ ସାଙ୍ଗରେ ଲଢ଼େଇ କରିବାକୁ । ସଙ୍ଗୀମାନଙ୍କୁ ବୋଧ ଶୋଧ ଦେଇ କହିଲେ— କିଛି ଭୟ କରିବନି । ସୌଦାଗରଙ୍କ ସ୍ତ୍ରୀଙ୍କୁ ଖୁବ୍ ଭଲରେ ରଖାଇବ । ଆମେ ଅଳ୍ପଦିନ ମଧ୍ୟରେ ଦସ୍ୟୁଦଳର ସନ୍ଧାନ ନେଇ ତାଙ୍କୁ ଫାଶୀ କାଠରେ ଝୁଲାଇବାର ବ୍ୟବସ୍ଥା କଲାପରେ ବୋଇତ ଆଣି ଏଠାରୁ ତୁମକୁ ନେଇଯିବୁ ।

ସମସ୍ତଙ୍କ ମନରେ ଖୁବ୍ ଝୁଙ୍କ ଉଠିଛି । ଦୁଃଖ କଷ୍ଟ ଯାହା ହେଉ ପଛେ ସେ କଥାକୁ ବା ପଚ୍ଛରେ କଏ । ଯେ କୌଣସିମତେ ଯଦି ଦସ୍ୟୁଦଳ ଧରା ପଡ଼ନ୍ତି ତାହାହେଲେ ଜଳଯାତ୍ରା ସଫଳ ହେଲା ବୋଲି ଧରି ନେବାକୁ ହେବ । ଏହି ହେଲା ଏକମାତ୍ର ପନ୍ଥା ।

ପରଦିନ ସକାଳୁ ମଧୁସାଦାଣି କାଠ ଭେଳାରେ ବସି ପଦ୍ମକୁମାର ଓ ସାଇଙ୍ଗ ଦୁହେଁ ବାହାରି ପଡ଼ିଲେ ଭାଗ୍ୟ ସଙ୍ଗେ ସଂଗ୍ରାମ କରିବାକୁ । ସମୁଦ୍ର ପାଣିକି ଶବ୍ଦାୟମାନ କରି ପ୍ରକାଣ୍ଡ ଭେଳା ଚାଲିଲା ପ୍ରବଳ ବେଗରେ । ଆରୋହୀ ତିନିଜଣ ଜୀବନ ମୂର୍ଚ୍ଛା ତା ଉପରେ ବସି ଚିନ୍ତା କରୁଥାନ୍ତି ସହସା କାପରି ଲକ୍ଷ୍ୟ

ସ୍ଥଳରେ ପହଞ୍ଚିବାପାଇଁ । ମନ ଖାଲି ଛଟ ଛଟ ଲାଗୁଥାଏ । କଥାରେ ଅଛି—

ଦାଇବ ଦଉଡ଼ି ମଣିଷ ଗାଈ
ଯେଣିକି ଟାଣିଲେ ତେଣିକି ଯାଇ ।

ଦୈବ ହେଲା ସାର ଦୁଃଆର ନପୁନ୍ତ । ସେ ଯେତେବେଳେ ଯାହା ଇଚ୍ଛା କରେ, ତାହାହିଁ ପ୍ରାଣୀର ଉପଭୋଗ୍ୟ । ଦୈବ ଉପରେ ବାଧା ଦେଇ ଖୋଜେ ହେଲେ ଆଗେଇ ପାରିବା ଅସହଜ କଥା । ତେଣୁ ପଦ୍ମକୁମାରଙ୍କୁ ବିପଦର ଘନଘଟା ମାଡ଼ିଆସିଲା ।

ଭେଳାଟି କଛିଦୂର ଭସି ଯିବାପରେ ଆରମ୍ଭ ହେଲା ଗୋଟାଏ ଝଡ଼ । ତା ପଛେ ପଛେ ପ୍ରଚଣ୍ଡ ତୋଫାନ ମଧ୍ୟ । ସାମୁଦ୍ରିକ ଝଡ଼ ତୋଫାନର ବେଗ ବେଳେ ବେଳେ ଏତେ ପ୍ରବଳ ହୁଏ ଯେ ବଡ଼ ବଡ଼ ଜାହାଜ ବ ଓଲଟି ପଡ଼େ । ସାମାନ୍ୟ କାଠ ଭେଳା କଥା ପଗ୍ଭରେ କଏ ?

ତୋଫାନର ଘାତ ପ୍ରତିଘାତରେ ବନ୍ଧା ହୋଇଥିବା ଗଣ୍ଠି ସବୁ ଭଡ଼ ଭଡ଼ ହୋଇ ଛିଣ୍ଡିଗଲା । ପଦ୍ମକୁମାର ତା ପୂର୍ବରୁ ଅଚେତ ହୋଇଥାଏ । ତେଣୁ ଭେଳା ଫାଟିବା ମାତ୍ରେ ସେ ପାଣିକି ଟଳି ପଡ଼ି ତୋଫାନର ଅନୁକୂଳ ଗତିରେ ଭସି ଗ୍ଭଲିଲା କୁଟା ଖଣ୍ଡେ ପରି । ମଧୁ ସାହାଣି ଓ ସାଇଁ ଗୋଟାଏ କାଠ ଉପରେ ଭରା ଦେଇ ପହଁରିବାକୁ ଲାଗିଲେ ।

କଥାରେ ଅଛି, ଯେତେବେଳେ—ନିଜ ରକ୍ଷଣ ଅସମ୍ଭବ,
ସେ କାହିଁ ପରକୁ ରକ୍ଷିବ ।

ବର୍ତ୍ତମାନ କାହାର ଆଶା ନାହିଁ ନିଜେ ବଞ୍ଚିବେ ବୋଲି । ଅନ୍ୟ କଥା ବା ମୁଣ୍ଡରେ ପଶୁଛି କେଉଁଠି ? ସୁତରାଂ ତିନୋଟି ଆରୋହୀଙ୍କ ଗତି ତିନି ପ୍ରକାର ହୋଇଗଲା ।

ମଧୁ ସାହାଣି କିଛୁ ଦୂର ପରେ ରାଘବ ମାଛ ହାବୁଡ଼େ ପଡ଼ି ସଂସାରରୁ ବିଦାୟ ନେଲା । ମନ୍ତ୍ରୀପୁଅ ପ୍ରାଣମୂର୍ଚ୍ଛା ପହଁରି ପହଁରି ଲାଗିଲା ଗୋଟିଏ ଦ୍ୱୀପରେ । ସେଠାକାର ଅନାର୍ଯ୍ୟ ଲୋକ-ମାନେ ତାକୁ ଧରିନେଇ ବିକିଦେଲେ ଜଣେ ଠିକାଦାରକୁ । ପଦ୍ମକୁମାର ଅଚେତ ଅବସ୍ଥାରେ ଲାଗିଲା ଗୋଟିଏ ଦ୍ୱୀପର ଉପକୂଳରେ ।

ଛୋଟିଆ ଦ୍ୱୀପ ଖଣ୍ଡିଏ । ମାଟି ବାଲି ଓ ବୁଦାବୁଦିଆ ଗଛ ଲତାରେ ଭରା । ସ୍ଥିର ମଝିରେ ଛୋଟ ଛୋଟ ନାଲି ଗୁଡ଼ିଏ ଶିରା କାଟିଲା ପରି ଏଣେ ତେଣେ ଲମ୍ବି ଯାଇଛି । ସେଥିରେ ମାଛ । କଇଁଛ, କଙ୍କଡ଼ା ଇତ୍ୟାଦି କ୍ରୀଡ଼ା କରୁଥାଏ । ଠାଏ ଠାଏ ଗହମ, ମକା ଓ ବାଜରା ଇତ୍ୟାଦି ଫସଲ ବି ମୁଣ୍ଡ ଟେକି ଉଠେ । ଅଧିବାସୀ ମୋଟେ ଗୋଟିଏ ଲୋକ । ନିତାନ୍ତ ଗରିବ । ନିଜ ଘରବାହା ଲଢ଼େଇ ପେଟ ପୋଷେ । ନାଁ ତାର ଦାସିଆ । ଷାଠିଏ ବର୍ଷ ତଳେ ତା ଗଣ୍ଡି ସଂସାର ଉପରେ ନିଆଁ ଲଗାଇ ଆଖି ବୁଜିଲା । ଗୋଟିଏ ବୋଲି ଝିଅ । ନାଁ ତାର ପାଣ୍ଡି । ଗୋଟିଏ ଖୁଣ୍ଟଳରେ ଗଢ଼ା, ତରୁଣ ରୂପଖଣ୍ଡେ । ଖୁବ୍ ପରିଶ୍ରମୀ । ଯୌବନର ସୁନେଲି ପରଦା ଟାଣି ଦେହ ମୁଣ୍ଡ ତାର ବି ଛପି-ଉଠିଛି । ମୋଟେ ସତରଟି ବର୍ଷ । ମୁହଁଟା ସବୁବେଳେ ତା'ର ହସ ହସ ଦିଶେ । ଗହଣା କି ବେଶବାସର କୌଣସି ପାରିପାଟୀ କି ଥିଲେ କ'ଣ ହେଲା, ଋଷି ମୁନି ଭୁଲି ଦେହେବା ପାଇଛି । ବାପାର ଏକମାତ୍ର ସନ୍ତାନ ସେ । ତେଣୁ ତା ପ୍ରତି ଭଲ ଦୃଷ୍ଟି ରଖିଥାଏ ଦାସିଆ ।

ସେଦିନ ପାଣ୍ଡି ସମୁଦ୍ରକୂଳକୁ ଯାଇଥିଲା ଚିଙ୍ଗୁଡ଼ି ଧରିବାକୁ । ଦୈବାତ୍ ମୂର୍ଚ୍ଛିତ ପଦ୍ମକୁମାରକୁ ପାଇ ଗୋଟାଏ ଆଣିଛି । ଦାସିଆର ଭାରି ଆନନ୍ଦ । ଏଡ଼େ ସୁନ୍ଦର ପିଲା । କୋଉ ରଜା ଜମିଦାର

ଘରେ ତା'ର ଜନ୍ମ ହୋଇଥିବ । କଣ ତା'ର ହେଲା, କାହିଁକି ସେ ସମୁଦ୍ର ପାଣିରେ ଭାସି ଭାସି ଆସିଲା ଏଠିକି । ଏ ସବୁ କଥା ଭାବି ବଡ଼ ଦୁଃଖିତ ହୋଇ ପଡ଼ୁଛି । ଶୀଘ୍ର ଚେତା ହେବାକୁ ଅଗାଧ ପରିଶ୍ରମ ବି କରୁଛି ।

ବାପ ଝିଅ ମିଶି କାଠ ନିଆଁ କରି ଗୁଡ଼ାଏ ସେକିବା ପରେ ପଦ୍ମକୁମାର ଆଖି ଫିଟାଇ ଅନାଇଲା ସତ; କିନ୍ତୁ କଥାବାର୍ତ୍ତା କରି ପାରିଲାନି । ଦେହରେ ପ୍ରବଳ ଜର, ଶଙ୍ଖ ଓ ମଝିରେ ମଝିରେ ଟିକିଏ କାସ ବି ହେଉଥାଏ ।

ଦାସିଆକୁ ଭାରି ଚିନ୍ତା ଲାଗିଲା । ଭାବିଲା ପିଲାଟାକୁ ବଞ୍ଚାଇ କ'ଣ ପୁଣି ଯମ ମୁହଁରେ ଦେବି ? ନାଁ । ଏ କଥା ମୋଠେ ହୋଇ-ପାରିବନି । ଆଲୋ ପାଲି ! ଆମ ଚେରମୂଳ ପୋଟଳାରୁ ସେ ବଡ଼ ଚେର ଖଣ୍ଡି ଟିକିଏ ପାଣିରେ ସିଝେଇକୁ । ମୋଠେ ପୋଷେ ପାଣି ରଖି ଆଣ ତ ।

ବାପର କଥାକୁ ମୁତାବକ ପାଲି ଖୁବ୍ ଚଞ୍ଚଳ ପାଞ୍ଚନ ସିଝାଇ ଆଣିଲା । ଥରକୁ ଥର ପାଞ୍ଚନ ପାଣି ପିଆ ଓ ସେକାଶୁଖା ଫଳରେ ପଦ୍ମକୁମାରର ଦେହ ଆସିଲା ଆରୋଗ୍ୟ ଆଡ଼କୁ ।

ରାଜାପୁଅ । ନବତଳ ସୌଧ ବିହାର ଛାଡ଼ି ପଡ଼ୁଛି ଗଣ୍ଡିବି କୁଡ଼ିଆରେ । କଥାଟା ଭାବି ମନେ ମନେ ଟିକିଏ ହସିଲା । ହେଲେ ବା ଉପାୟ କ'ଣ ? ସବୁ ତ ଦୈବ ହାତର କଥା । ଧନ ଦୌଲତ୍ ଘୋଡ଼ା ହାତୀ ନ ଥିଲେ କ'ଣ ହେବ, ଶାନ୍ତି ଅଛି । ସ୍ନେହ ଅଛି । ପାଲିର ହସ ହସ ମୁହଁ ଖଣ୍ଡିକ ଦେଖିଲେ ଜୀବନର ସମସ୍ତ ଦୁଃଖ ପାଶୋରି ହୋଇଯାଏ । ଦାସିଆର ଅନାବିଳ ସ୍ନେହ ଓ ସେବା ଶୁଶ୍ରୂଷା କଥା ଭାବି ବେଳେ ବେଳେ ସେ ଏତେ ବିଭୋର ହୋଇ ଉଠେ ଯେ, ତା'ର ବାହାର ଭିତର ଜ୍ଞାନ ବି

ରହେନ । ହେଲେ ଦାସିଆ ଓ ପାଲ୍ଲିଙ୍କ ସାଙ୍ଗରେ ଖୁବ୍ ଆତ୍ମୀୟତା ବଢ଼ି ଯାଇଥାଏ ।

ଦେହ ସମ୍ପୂର୍ଣ୍ଣ ଆରୋଗ୍ୟ ହୋଇ ବଳ ବପୁ ଫେରିବାକୁ ତାକୁ ମାସେ ଲଗିଲା । ଏ ମଧ୍ୟରେ ପାଲ୍ଲି ତା'ର ବହୁତ ସେବା କରିଛି । ତା'ର କର୍ପୂର କଥା ଓ ଅଗାଧ ସ୍ନେହ ପଦ୍ମକୁମାର ମନରେ ଟାଣି ଦେଇଛି ଗୋଟିଏ ଅଲଗା ଭାବ । ଗତ ଗତ ଅନିଦ୍ରା ରହି ଭାବିଛି ସେ । ପାଲ୍ଲି ଗରିବର ଝିଅ ହେଲେ କଣ ହେଲା, ଆଦର୍ଶ ଅତି ମହତ୍ । ଶହ ଶହ ରାଜା ଜମିଦାରଙ୍କ କୁଳ ଚଳୁ ବଡ଼ାରଣୀ ଝିଅମାନଙ୍କଠାରେ ପାଲ୍ଲି ପରି ସୁଗୁଣ ବୋଧହୁଏ ନ ଥିବ । ଭଗବାନ ଯେବେ ଏ ଯାତ୍ରାରେ ମୋତେ ଜୟଯୁକ୍ତ କରନ୍ତି ଓ ମୁଁ ପ୍ରକୃତରେ ଜଳଦସ୍ୟୁମାନଙ୍କୁ ନିଷ୍କାସନ କରି ଭଲରେ ରାଜ୍ୟକୁ ଫେରେ, ତେବେ ହୃଦୟର ରାଣୀ କରି ତାକୁ ସଙ୍ଗରେ ନେଇଯିବି ।

ପାଲ୍ଲି ମଧ ଭାବେ । ପଦ୍ମକୁମାର । ବିଶାଳ ଓଡ଼ିଶାର ଏକଚ୍ଛତ୍ରବାସୀ ସମ୍ରାଟଙ୍କ ପୁତ୍ର । ଧନ, ମାନ ଓ ବିଳାସ ସମୁଦ୍ରରେ ଯାହାର ଦିନରାତି ବିହରଣ ହେଉଥିଲା, ତା'ର ଏ ଗରିବ କୁଡ଼ିଆ ପ୍ରତି ଟିକିଏ ଘୃଣା ନାହିଁ । କେଡ଼େ ମହତ୍, କେଡ଼େ ଆଦର୍ଶ ଜୀବନ । ଛୋଟଲୋକ ବୋଲି ଆମକୁ ତ ସେ ଅନାଦର କରୁନାହାନ୍ତି । ବରଂ ସମ୍ମାନ କରୁଛନ୍ତି । କଥାରେ ତାଙ୍କର ଅମୃତ ଝରଣା ଅଛି । ସତେ କ'ଣ ସେ ମୋତେ······?

ଏମିତି ଏମିତି ସେମାନଙ୍କ ଦିନକାଳ କଟିବାକୁ ଲଗିଥାଏ । ତେଣେ ମନ୍ତ୍ରୀପୁଅ ସାରଙ୍ଗ ଠିକାଦାରର କ୍ରୀତଦାସ ହୋଇ ରହିଲା । ପଳାଇ ଯିବାକୁ ମଧ୍ୟକୁ ଉପାୟ ନ ଥାଏ । ସବୁବେଳେ ତା ପଛେ ପଛେ ଲୋକ । ଖାଦ୍ୟ ପେୟ ବା ଲୁଗାପଟାର ବ୍ୟବସ୍ଥା କିଛି ଭଲ ନୁହେଁ । ଖଣ୍ଡେ ଚିରା ପାଇଜାମା ଓ ଖଣ୍ଡେ ଚିରା କାମିଜ

ଛଡ଼ା ଗାମୁଛା ଖଣ୍ଡେ ବି ନାହିଁ । କାମ ହେଲା ଗଧ ଚରେଇବା । ଠିକାଦାରର ପାଂଶହ ଗଧ ଥାଆନ୍ତି । ସାରଙ୍ଗ ନିତି ସକାଳୁ ତାଙ୍କୁ ଚରାଇବାକୁ ନିଏ ଜଙ୍ଗଲକୁ, ଫେରେ ସନ୍ଧ୍ୟାବେଳେ ।

ଦିନେ ତା'ର ଆସି ଦୁର୍ଯୋଗ ଉପସ୍ଥିତ ହେଲା । ସକାଳୁ ଗଧ ନେଇ ଯାଇଥାଏ ଜଙ୍ଗଲକୁ । ଖରା ଲାଗିବାରୁ ଗଧମାନଙ୍କୁ ଖଣ୍ଡେ ପଡ଼ିଆରେ ଛାଡ଼ି ବସିଲା ଯାଇ ଗଛ ଛାଇରେ । ଶିର ଶିର ପବନ ହେଉଥାଏ । ସେହି ପବନରେ ତାକୁ ଧୀରେ ଧୀରେ ନିଦ ଆସିବାରୁ ସେହି ଗଛ ଛାଇରେ ଢୁଳାଇ ପଡ଼ିଲା । ଆସିଗଲା ଘୋର ନିଦ ।

ଗଧଗୁଡ଼ାକ କଅଁକଣା ଅଭାବରୁ ଲଟା ପତ୍ର, ଘାସ ତରୁ ତରି ଜଙ୍ଗଲ ଭିତରକୁ ମୋଡ଼ିଲେ । ଯିଏ ଯୁଆଡ଼େ ସୁବିଧା ପାଇଲା, ସିଆଡ଼େ ଯାଇ ଚରିଲା । ସବୁ ଗୋଟି ଗୋଟିକିଆ ହୋଇଗଲେ । ପର୍ବତ ଉପରୁ ସିଂହ ଓହ୍ଲାଇ ଦଶ ପନ୍ଦରଟା ଗଧ ମାରିଦେଲା । ଆଉ ଅନ୍ୟଗୁଡ଼ାକ ଯିଏ ଥିଲେ, ଭୟରେ ଚରାମାରି ଏଣେ ତେଣେ କଣାକୁଣା ହୋଇଗଲେ ।

ପଞ୍ଚାଟାଏ ପଳାଇ ଗଲେ ଘରକୁ । ଠିକାଦାର ଆଶ୍ଚର୍ଯ୍ୟ ହୋଇଗଲା । ଗଧଗୁଡ଼ାକ କଣ୍ଠା ଝଙ୍କାରେ ଦଉଡ଼ି ଖଣ୍ଡି ଆଖାବଗ ହୋଇଥାନ୍ତି । ଘଟଣା କ'ଣ, ସାରଙ୍ଗ କୁଆଡ଼େ ଗଲା । ଗଧ କୁଆଡ଼େ ଗଲା । ଏମାନଙ୍କୁ ଖୋଜିବା ଲାଗି ଆଉଦନେ ଲୋକ ପଠାଇଲା ।

ନିଦରୁ ଉଠି ସାରଙ୍ଗ ଦେଖିଲା ଗଧ ନାହାନ୍ତି । ଭୟରେ ରକ୍ତ ତା'ର ଶୀତଳ ହୋଇ ଆସିଲା । କ'ଣ କରିବ, କନ୍ଦାକଟା କରି ଖୋଜିବାକୁ ଦଉଡ଼ିଲା ବଣ ଭିତରକୁ । ସିଂହ ମାରି ପକାଇଥିବା ଗଧଗୁଡ଼ାଙ୍କ ମୃତଶବ ଦେଖି ତା' ମନରେ ଆସିଲା ଦାରୁଣ ଦୁଃଖ । ତେଣୁ ହାତଶରେ ବସି ଭାବିବାକୁ ଲାଗିଲା ।

କୁଆଡ଼େ ଯିବ, କ'ଣ କରିବ ! ଠିକାଦାର ଘରକୁ ଗଲେ ସେ ନିଶ୍ଚୟ ମାରୁ ମାରୁ ମାରି ପକାଇବ । ଘରକୁ ଯିବାର ତ ଉପାୟ ନାହିଁ । ପଦ୍ମକୁମାର କୁଆଡ଼େ ଗଲା, ମଲା କି ବଞ୍ଚିଲା, ଏ ଜୀବନରେ ଆଉ ଯେ ତାର ସନ୍ଧାନ ପାଇବ ଏ କଥା କେବେ ନୁହେଁ । ଅନ୍ୟ ସଙ୍ଗୀମାନେ ଯୋଉଠି ରହିଲେ, ସେ ଜାଗାର ସନ୍ଧାନ ଯେ ଆଉ କରି ପାରିବ, ଏ କଥା ବି ନୁହେଁ । ବର୍ତ୍ତମାନ ମୋର ବ୍ୟବସ୍ଥା କ'ଣ ହେବ ? ମୁଁ ଥିଲି କ'ଣ, ହେଲି କ'ଣ । ଏହି କଥା ଭାବି ବହୁତ କାନ୍ଦିଲା । ପ୍ରାଣରେ ଏତେ ଆଘାତ ଲାଗିଲା ଯେ ଥରକୁ ଥର ଦମ ବନ୍ଦ ହୋଇଯିବାକୁ ଗୁଡ଼ିଲା ନାହିଁ ।

ରାତି ହେଲା । ତେବେ ତାର ଭାବନା ସରିଲା ନାହିଁ କି ସେ ବସିବା ସ୍ଥାନରୁ ଉଠିଲା ନାହିଁ । ଯେତେ ଦୂରକୁ ଦୂରକୁ ଭାବିଲା, ଆଖିରୁ ସେତେ ଲୁହ ବହିବାକୁ ଲାଗିଲା ।

ଠିକାଦାର ଲୋକମାନେ ଝାଡ଼ ଜଙ୍ଗଲ ଖୋଜି ଖୋଜି ବୈଦ୍ୟନାଥ୍ ତାକୁ ପାଇଲେ । ପରସ୍ପରେ ମାଡ଼ ବି ହେଲେ । ମଲା ଗଧଗୁଡାକ ଦେଖି ବହୁତ ଗାଳି ଗୁଲଜ କଲାପରେ ଧରି ନେଇଗଲେ ଠିକାଦାର ପାଖକୁ ।

ଠିକାଦାର ଗୁଡ଼ାଏ ମାଡ଼ଦେଲା । ତା'ପରେ ଆଦେଶ କଲା— ଏହାର ହାତ ଗୋଡ଼ ବାନ୍ଧି ସମୁଦ୍ରକୂଳେ ଯେଉଁ ରତ୍ନଗର୍ଭା ଗୁମ୍ଫା ଅଛି, ତାହାରି ଭିତରେ ପକାଇ ଦେଇ ଆସ । ମାମା ସାପବଂଶଙ୍କ ପେଟରେ ବଦମାସର ସମାଧି ହେଉ । ଆଦେଶମାନେ ତାହା କାର୍ଯ୍ୟରେ ପରିଣତ ହେଲା ।

କଥାରେ ଅଛି—

ଯାହାପ୍ରତି ଆଶ୍ରା ଧର୍ମ ନିରଞ୍ଜନ
ଭାଗ୍ୟବାନ ସେହି ନର

ସଞ୍ଜିବନୀ ପୁରେ ଜଳେ ସ୍ଥଳେ
ମୃତ୍ୟୁ ନୁହେ ତାଙ୍କୁ ବର ।
ବଳିଷ୍ଠ ମହାଙ୍କୁ ନଷ୍ଟ କରିବାକୁ
ଫିଙ୍ଗେ ଆଣ୍ଠେ କାଳ ମୁଖେ
ଧର୍ମ ନିରଞ୍ଜନ ହଟାଇ କାଳକୁ
ନେଇସାନ୍ତି ତାଙ୍କୁ ସୁଖେ ।

ସମୁଦ୍ର କୂଳରେ ଖଣ୍ଡେ ଶ୍ରେଷ୍ଠ ପାହାଡ଼ । ସେହି ପାହାଡ଼ କାନ୍ଥରେ ଆଗ୍ନେୟଗିରି ଥାଏ ଗୋଟିଏ ପ୍ରଚଣ୍ଡ ଗାଡ଼ । ତାଙ୍କୁ ରତ୍ନଗର୍ଭା-ଗୁମ୍ଫାବୋଲି କହନ୍ତି । ଅତଭୟଙ୍କର ଭିତରଟା । ଗୋଟାଏ ବଡ଼ ମାମ୍ବା ସାପ ସେଥିରେ ତାର ପିଲାକୁଟୁମ୍ବ ନେଇ ବସା କରିବାର ସେଠାକାର ଲୋକେ ଦେଖିଛନ୍ତି । ତେଣୁ କୌଣସି ଦୋଷୀ ଲୋକକୁ ଦଣ୍ଡ ଦିଆ ଯିବାର ହେଲେ ତାର ଭିତରେ ପକାଇ ଦିଆଯାଏ ।

ସାରଙ୍ଗକୁ ସେଦିନ ଠିକାଦାରର ଅନୁଚରମାନେ ହାତ ଗୋଡ଼ ବାନ୍ଧି ରତ୍ନଗର୍ଭ ଗୁମ୍ଫାରେ ପକାଇ ମୁହଁରେ ପଥର ମଡ଼ାଇ ଦେଇ ଚାଲି ଆସିଲେ । ସାରଙ୍ଗର ବା ଆଉ ଗତି କ'ଣ । ନିତସି ତା ଆସନ୍ନ ମୃତ୍ୟୁକୁ ଅପେକ୍ଷା କରି ପଡ଼ି ରହିଲା । ତା ଭିତରଟା ଘରି ଗନ୍ଧ ହେଉଥାଏ । କେଉଁ କାଳରୁ ମଣିଷ ହାଡ଼ ଓ ମୁଣ୍ଡ ଗୁଡ଼ାକ ଜମା ହୋଇଥାଏ । କେତେ ପୋଶହା ହୋଇଗଲଣି, କେତେ ତଟକା ବ ଅଛି । ସେ ତଟକା ହାଡ଼ ମଧ୍ୟରେ ଖଣ୍ଡେ ପଡ଼ିଛି ଦାଢ଼ୁଆ ଖଣ୍ଡାଭଳି ।

ସାରଙ୍ଗ ଭାବିଲା—କୌଣସି ମତେ ଯଦି ଏ ବନ୍ଧନ ରଜ୍ଜୁ ଖଣ୍ଡ ଛିଣ୍ଡି ଯାଆନ୍ତା, ତା ହେଲେ ଏଠୁ ଉଦ୍ଧାର ହେବା ପାଇଁ ଥରେ ଚେଷ୍ଟା କରନ୍ତି । ତେଣିକି ଭାଗ୍ୟରେ ଯାହାଥାଉ । ଏମିତି ଭାବୁ ଭାବୁ ମୁଣ୍ଡରେ ଗୋଟିଏ ବୁଦ୍ଧି ଖେଳିଗଲା । ତେଣୁ ସେ ଗଡ଼ି ଗଡ଼ି

ଯାଇ ଖଣ୍ଡେ ଧାରୁଆ ହାଡରେ ହାତବନ୍ଧା ଦଉଡ଼ିଟାକୁ ଘସିବାପାଇଁ ଆରମ୍ଭ କଲା ।

ପ୍ରଭୁ ତା'ର ଶ୍ରମ ସଫଳ କଲେ । କିଛି ସମୟ ପରେ ହାତ ଦଉଡ଼ି କଟି ଯିବାରୁ ତା ସାହାଯ୍ୟରେ ଗୋଡ଼ ଦଉଡ଼ି ବି ଫିଟାଇ ଦେଲା । ଚେଷ୍ଟା କଲା ତା ଭିତରୁ ବାହାରିବାକୁ । ମାତ୍ର ତା'ର ସମସ୍ତ ଚେଷ୍ଟା ବିଫଳ ହେଲା ।

ହାତଶ ହୋଇ ବସିଛି । ଏତିକିବେଳେ ଗୁମ୍ଫାର କଡ଼ପଟେ ଥିବା ଗୋଟିଏ ଗାତ ଭିତରୁ ଶୁଣାଗଲା ସାପ ଗର୍ଜନ । ମାମ୍ବା କଥା ମନେପଡ଼ି ଦଶଦିଗ ତାକୁ ଅନ୍ଧାର ଦିଶିଲା । କ'ଣବା କରିବ, କେବଳ ପ୍ରାଣ ବିକଳରେ ପୂଜାକୁ ପୂଜା ମୋଟା ମୋଟା ହାଡ଼ଖଣ୍ଡ ମାନ ସେ ଗାତ ମୁହଁରେ ଦେଇ ହାଡ଼ ସାହାଯ୍ୟରେ କାଡ଼େଇବାକୁ ଲାଗିଲା । ପ୍ରଭୁଙ୍କ ଦୟାରୁ କିଛି ସମୟ ପରେ ସେ ଗାତର ମୁହଁ ଏପରି ଭାବେ ବନ୍ଦ ହୋଇଗଲା ଯେ, ମାମ୍ବା ବିଚରା ତା ପିଲାକୁଟୁମ୍ବ ସହେନ ତା ମଧ୍ୟରେ ସମାଧି ଗ୍ରହଣ କରିବାକୁ ବାଧ ହେଲା । ଯେତେ ଗର୍ଜନ କଲେ ବା ଶୁଣୁଛି କିଏ ?

ନାନା ଉପାୟ ଚିନ୍ତା କରି ବିଚରା ଉଦ୍ଧାରର ବାଟ ଖୋଜୁ ଖୋଜୁ ଦେଖିଲା—କିଛି ଗୋଟାଏ ଜୀବ ଗୋଟିଏ ସୁଡଙ୍ଗ ବାଟଦେଇ ତା ଭିତରକୁ ଆସୁଛି । ଏହିପରି ବହୁ ଆଗରୁ ଜୀବଟିର ଆସିବା ଅଭ୍ୟାସ ହୋଇପଡ଼ିଛି । ବୋଧହୁଏ ସଢ଼ା ପଶୁ ମାଂସ ଖାଇବା ତାର ଅଭିପ୍ରାୟ । ଜୀବଟା ଖୁବ୍ ଦଉଡ଼ ଧରିରେ । ପଶି ଆସିଲାବେଳେ ସଁ ସଁ ଶବ୍ଦ ଶୁଣି ଚତୁର ସାରଙ୍ଗ ଖଣ୍ଡେ ହାଡ଼ରେ ତାକୁ ନିରାଶିଆ କରି ପାହାର ଦି' ଗୁଡ଼ାଟା ଲଗାଇ ଦେଲା । ଜୀବଟା ଉପରେ ଯେଉଁ ବାଟଦେଇ ପଳାଇଲା, ସାରଙ୍ଗ ଦେଖିଲା ନିଜେ ମଧ୍ୟ ଗୁରୁଣ୍ଡି ଗୁରୁଣ୍ଡି ସେହିବାଟେ ପଳାଇଯାଇ ପାରିବ । ତେଣୁ ତା'ର ମୁହଁଟା ଉଜ୍ଜ୍ୱଳ

ହୋଇ ଉଠିଲା । ସେ ଆଉ କ୍ଷଣକାଳ ବିଳମ୍ବ ନକରି ଛୁଟିଲା ସେହି ବାଟଦେଇ ।

ଜୀବନ୍ତା କ୍ଷିପ୍ର ଗତିରେ ପଳାଇଗଲା । ସାରଙ୍ଗ ତାକୁ ଚିହ୍ନି ପାରିଲା ନାହିଁ । କିଛିଦୂର ଯାଇ ହଠାତ୍ ଚମକି ପଡିଲା । ଆଖିଆଗରେ ପୁଳା ପୁଳା ମୂଲ୍ୟବାନ ମଣି ମୁକ୍ତା ଚକ୍‌ଚକ୍ କରୁଛି । ତା ତେଜରେ ସମୁଦ୍ରଖର ପର୍ଯ୍ୟନ୍ତ ରାସ୍ତା ପରିଷ୍କାର ଦେଖା ଯାଉଛି ।

ସାରଙ୍ଗ ସେଥିରୁ ପୁଳାଏ ଆଣି କାନରେ ବାନ୍ଧିଲା । ତା'ପରେ ଧୀରେ ଧୀରେ ବାହାରିଆସିଲା ବାହାରକୁ । ଏଣିକି ଦେଖାଗଲା ସମୁଦ୍ର । ଏଣିକି କ'ଣ କରିବ, ବସି ଭାବୁଛି, ଏହିପରି କେତେ ଦେଖାଗଲା ବୋଇତ ।

ସାରଙ୍ଗ ମନରେ ଆଶାର ସଞ୍ଚାର ହେଲା । ତେଣୁ ସେ ପ୍ରାଣପଣେ ଚିତ୍କାର କରି ଡାକ ପକାଇଲା ତାଙ୍କୁ ।

ମାଝିମାନେ କୂଳକୁ ବୋଇତ ଆଣିଲେ । ବୋଇତ ଖଣ୍ଡିକ ଥିଲା ସ୍ୱୟଂ ଦସ୍ୟୁପତି ହରିହର ସାମନ୍ତରାଙ୍କର । ନିଜେ ସାମନ୍ତରା ମଧ୍ୟ ବୋଇତରେ ଥିଲେ । ଉଦ୍ଦେଶ୍ୟ ତାଙ୍କର ରଜାପୁଅ ପଦ୍ମକୁମାର ଦଳକୁ ଧରିବାକୁ । ହେଲେ ସାରଙ୍ଗର ଚେହେରା ଆଶାଖିତ ଭାବରେ ବଦଳି ଯାଇଥିବାରୁ ତାକୁ ଚିହ୍ନି ପାରି ନ ଥିଲେ । ନିଜେ ସମାନ୍ତରା ପଚାରିଲେ—କ'ଣ କହୁଛୁ ?

ସାରଙ୍ଗ—ତୁମ ବୋଇତରେ ଯିବାକୁ ଚାହେଁ ମୁଁ ।

ପଚାରିଲେ—କେଉଁଠାକୁ ଯିବୁ ?

କହିଲା—ଖଣ୍ଡେ ତାଙ୍କଣୀ କରି ପେଟ ପୋଷିବି ।

ପଚାରିଲେ—ତୋ ଘର ?

କହିଲା—କହି ପାରିବିନି । ପିଲାଦିନୁ ମୋ ବାପା ମା ମତେ ଗୋଟିଏ ଠିକାଦାରକୁ ବିକି ଦେଇ ଥିବାରୁ, ତା'ରି ଘରେ

ଗଧ ଜଗୁଥିଲି । ପ୍ରଭୁଙ୍କ ଦୟାରୁ ମୋତେ ବହୁତ ରତ୍ନର ସନ୍ଧାନ ମିଳିଲା । ତେଣୁ ଭାବୁଛି—ଲୁଚି କରି କୌଣସି ଦେଶକୁ ପଳାଇ ଖଣ୍ଡେ ଜମିକରି ବାଡ଼ଘର ଠିକ କଲାପରେ ଆସି ରତ୍ନଗୁଡ଼ିକ ନେଇ ବନ୍ଦୋବସ୍ତ କରିବି । ହାତକୁ ପଇସା ଆସିଲାଠୁଁ ଘର ସଂସାର ଗଢ଼ିବାକୁ ହେବ ।

ରତ୍ନ କଥା ଶୁଣି ସାମନ୍ତଙ୍କ ଲୋଲୁପ ଆଖି ଦୁଇଟା ଉଜ୍ଜ୍ୱଳ ଦେଖାଗଲା । ସେ ନଇଁ ଲେଇ କରି କହିଲେ—ଆରେ ବାପ୍ପା, ମୋ ଦଳରେ ଯୋଗଦେଇ ଯଦି ରହିବୁ ପାରିବୁ ତେବେ ମୁଁ ତୋର ସବୁ ସୁବିଧା କରି ଦେଇ ପାରିବି । ମାତ୍ର ତୁ ଯେଉଁ ରତ୍ନ କଥା କହୁଛୁ, ସେ ପ୍ରକୃତରେ ରତ୍ନ କି ଆଉ କ'ଣ, ମୋତେ ଥରେ ଦେଖାଇ ପାରିବୁ ?

ସାରଙ୍ଗ ସମନ୍ତଙ୍କୁ ଚିହ୍ନି ନେଇଥିଲା । ଖୁବ୍ ଶୀଘ୍ର ଶୀଘ୍ର ମୁଣ୍ଡ ଖୋଲାଇ ଠିକ୍ କଲା—ଯାଲରେ ପକାଇବାକୁ । ମଣି ମୁକ୍ତାର ଲୋଭରେ ନ ପକାଇଲେ ଫାନ୍ଦଟା କାଳେ ବିଗିଡ଼ି ଯିବ । ତେଣୁ ସେ କାନରେ ବାନ୍ଧିଥିବା ମଣି ମୁକ୍ତାଗୁଡ଼ାକ ଫିଟାଇ ଦେଖାଇ ଦେଲା ।

ସମାନ୍ତର ଓ ଅନ୍ୟାନ୍ୟ ଦସ୍ୟୁମାନେ ଚମକି ପଡ଼ିଲେ । ବହୁ ମୂଲ୍ୟବାନ୍ ପଦାର୍ଥ । ଏଗୁଡ଼ିକ ଯଦି ହାତ ପଇଠ ହୁଏ, ତା'ହେଲେ କୋଟି କୋଟି ଟଙ୍କା ହାତକୁ ଆସିଯିବ । ଏହିକଥା ଭାବି ସେ ଆହୁରି ନଇଁ ଲେ କରି କହିଲେ—ବୁଝିଲୁ ବାପ୍ପା ! ମୁଁ ନିଶ୍ଚୟ କରି କହୁଛି, ତୋର ସବୁ ସୁବିଧା କରିଦେବି । କେବେହେଲେ ମୋ ଦଳରୁ ବାହାର କରି ଦେବିନାହିଁ । ଦଳରେ ବି ତୋତେ ସର୍ଦ୍ଦାର କରାଇ ଦିଆଯିବ । ମାତ୍ର ଗୋଟିଏ କଥା ।

ସାରଙ୍ଗ ପଚାରିଲା—କି କଥା ?

କହିଲେ—ଏ ରତ୍ନଗୁଡ଼ିକ ଛାଡ଼ିଲେ କିଏ ନେଇ ଯାଇପାରେ । ତେଣୁ ଯେଉଁଠି ଦେଖିଛୁ, ବର୍ତ୍ତମାନ ସେଠାକୁ ଚାଲ, ତାକୁ ସଙ୍ଗରେ ନେଇଯିବା ।

ସାରଙ୍ଗର ଉଦ୍ଦେଶ୍ୟ ଅନ୍ୟ ପ୍ରକାର ଥିଲା । ତେଣୁ ସେ ତାଙ୍କୁ ସାଙ୍ଗରେ ନେଇ ମଣି ମୁକ୍ତାକ ଦେଖାଇ ଦେବରୁ ସବୁ ଆଣି ବସ୍ତାରେ ପୁରାଇ ସିଧା ଫେରିଗଲେ ନିଜ ଘରକୁ । ସାରଙ୍ଗ ମଧ୍ୟ ତାଙ୍କ ସାଙ୍ଗରେ ଗଲା ।

ହରିହର ସାମନ୍ତଙ୍କ ଘର । ଧନ ଦୌଲତର ମୋଟେ ଅଭାବ ନାହିଁ । ଦାସ ଦାସୀ ଅନେକନ୍ତା । ହେଲେ ଅଭାବ ଥିଲା ଗୋଟିଏ କଥା—ଯାହା କ କଥାରେ କହିବାକୁ ଗଲେ—

ଗୃହ କ କାର୍ଯ୍ୟଂ ଯତ୍ର ନାସ୍ତି ଧନ
ଧନ କ କାର୍ଯ୍ୟଂ ଯତ୍ର ନାସ୍ତି ଭାର୍ଯ୍ୟା
ଭାର୍ଯ୍ୟା କ କାର୍ଯ୍ୟଂ ଯତ୍ର ନାସ୍ତି ପୁତ୍ର
ପୁତ୍ର କ କାର୍ଯ୍ୟଂ ଯତ୍ର ନାସ୍ତି ବିଦ୍ୟା
ବିଦ୍ୟା କ କାର୍ଯ୍ୟଂ ଯତ୍ର ନାସ୍ତି ବୁଦ୍ଧିଃ ।

ସାମାନ୍ତରଙ୍କର ଗୃହ ଅଛି । ଧନବ ଅଛି । ଭାର୍ଯ୍ୟା ଥାଇ ନ ଥିଲା ପରି ଅର୍ଥାତ୍—ବନ୍ଧ୍ୟା, ଓଳ, ଖପା, କାଲୁଣି ଓ ଅସୁନ୍ଦରୀ । ସବୁ କଥା ଯାକ ଏକାଠି ହୋଇଛି । ଅବଶ୍ୟ ପ୍ରଥମରୁ ନୁହେଁ । ବିବାହର ଦୁଇବର୍ଷ ପରେ ବସନ୍ତ ରୋଗର ପ୍ରଭାବ ହେତୁ ସ୍ତ୍ରୀ ଲୋକଟା ଅକର୍ମଣ୍ୟା ହୋଇପଡ଼ିଲା । ଏଣୁ ସମାନ୍ତଙ୍କ ମନରେ ଗୋଟାଏ ଗୋପମାପୁ ଦୁଃଖ ବସାବାନ୍ଧି ରହିଥାଏ । ସେଥିପାଇଁ ଦସ୍ୟୁବୃତ୍ତି ମାଧ୍ୟମରେ ଗୋଟିଏ ରୂପସୀର ମଧ୍ୟ ଚାଲିଥାଏ ଅନୁସନ୍ଧାନ ।

ସାରଙ୍ଗପାଇ ଘାଚ ଖୁସିରେ କହିଲେ—ଧନ ଦୌଲତ ଓ ମଣି ମୁକ୍ତାପୁରିକ ଠୁଳ ସମାନ୍ତରଙ୍କ ଲୁହା ସିନ୍ଦୁକମାନଙ୍କରେ ।

ଆଦର ସାଦରରେ ଅଭାବ ନାହିଁ । କଥା ହେଲା ତାଙ୍କ କାମକାର୍ଯ୍ୟ ବୁଝିବା ପାଇଁ ସାରଙ୍ଗଙ୍କୁ ମେନେଜର ରଖାଯିବ ।

ଚତୁର ସାରଙ୍ଗ କିନ୍ତୁ ଏ କଥାରେ ମୋଟେ ରାଜି ହେଉନାହାନ୍ତି । କେବଳ ଜିଦ୍ ଧରି କହିଲେ—ଆପଣ ପ୍ରଥମେ ମୋତେ ପ୍ରତିଶ୍ରୁତି ଦେଇଛନ୍ତି ଦଳରେ ସର୍ଦ୍ଦାର କରିବାକୁ । ମୁଁ ବି ସେ କାମକୁ ଭଲଭାବେ ନେଇଆଣି ଥୋଇ ପାରିବ । ତେଣୁ ମୋତେ ସର୍ଦ୍ଦାର କରାଯାଉ ।

ସାମନ୍ତରାୟ ନାଚାର । ତା କଥା ଭାଙ୍ଗିବା ପାଇଁ ମନ ବି ବଳୁନ ଥାଏ । ତେଣୁ ତାକୁ ଦସ୍ୟୁଗିରିର କଳା କୌଶଳ ଶିକ୍ଷା କରିବା ପାଇଁ ଅନୁରୋଧ କଲେ ସାରଙ୍ଗ ମଧ୍ୟ ରାଜି ହୋଇଗଲେ । ତା ପରେ ସାମନ୍ତରାୟଙ୍କ ଦସ୍ୟୁକେନ୍ଦ୍ରକୁ ପଠାଇ ଦିଆଗଲା ତାକୁ । କେନ୍ଦ୍ର ଖଣ୍ଡିକ ସମୁଦ୍ର ମଧ୍ୟରେ ଖଣ୍ଡେ ମନୋରମ ଟାପୁ । ସେଠାରେ ପ୍ରଚଣ୍ଡ ପ୍ରକାଣ୍ଡ ଘର, ଖେଳ ପଡ଼ିଆ କୁସ୍ତି ହସରତ୍ କରିବାପାଇଁ ଆଖଡ଼ା ଓ ବହୁତ ଅସ୍ତ୍ର ଶସ୍ତ୍ର ମଜୁଦ୍ ଥାଏ । ସାରଙ୍ଗଙ୍କୁ ସେହି କେନ୍ଦ୍ରରେ ହରିହର ସାମନ୍ତରାୟ ପୁଣିଥରେ ବୋଇତ ନେଇ ସମୁଦ୍ର ଭିତରକୁ ଯାତ୍ରା କଲେ । ଚାଲିଲା ପଦ୍ମକୁମାର ଦଳ ଓ ଅପହୃତା ସୌଦାଗର ପତ୍ନୀର ଅନୁସନ୍ଧାନ ।

ପଦ୍ମକୁମାର ପାଲୀ ଓ ଦାସିଆଙ୍କ ସ୍ନେହରେ ଆବଦ୍ଧ ହୋଇ ସବୁ କଥା ପାଶୋରି ଦେଇଛି । ଆଉ ରାଜବଂଶ କଥା ମନେ ପଡ଼ୁନି କି ସଙ୍ଗୀମାନେ କେଉଁଠି କିପରି ସୁଖରେ ଅଛନ୍ତି କି ଦୁଃଖରେ ଅଛନ୍ତି ସେ କଥା ପ୍ରତି ନଜର ନାହିଁ । ଧୀରେ ଧୀରେ ସେ ଗୋଟିଏ କମ୍ଫୁଟକମ୍ବାକାର ଜୀବ ପାଲଟିବାକୁ ବସିଲାଣି ।

ବାଟରେ ନାନା ପ୍ରକାର ସନ୍ଧାନ କରି କରି ସାମନ୍ତରାୟ ଦଳବଳ ନେଇ ସେଦିନ ପହଞ୍ଚିଥାନ୍ତି ସେହି ଦ୍ୱୀପରେ । ବହୁ ବହୁ

ପଲ୍ଲିମାନ ଓ ଅସ୍ତ୍ରଶସ୍ତ୍ର ସବୁ ସାଙ୍ଗରେ ଥାଏ । ଗୋଟିଏ ନିର୍ଜନ ସ୍ଥାନରେ ତମ୍ବୁ ପଡ଼ିଲା । ସମୁଦ୍ର ମାଛ ମାରି ଖୁବ୍ ଆନନ୍ଦରେ ରନ୍ଧାବଢ଼ା କରି ଖିଆପିଆ କଲେ । ଗୁପ୍ତଚର ଝାପୁସାରା ବୁଲି ସନ୍ଧାନ ନେବାରେ ଲାଗିପଡ଼ିଲେ ।

ପାଲି ଆସିଥିଲା ଗାଧୋଇବାକୁ । ଦୈବାତ୍ ସାମନ୍ତଙ୍କ ଲୋଲୁପ ଦୃଷ୍ଟି ଯାଇ ତା ଉପରେ ପଡ଼ିଲା । ଅତି ସୁନ୍ଦରୀ ଝିଅ । ତା'ର ରୂପ ଓ ଯୌବନ ଛଟକ ମୁହୂର୍ତ୍ତକ ମଧ୍ୟରେ ତାଙ୍କ ଜୀବନ ମଧ୍ୟରେ ଆସନ ଜମାଇ ନେଲା । ତେଣୁ ସେ ତା ଘରର ସନ୍ଧାନ ନେବାକୁ ତା ପଛରେ ଚର ନିଯୁକ୍ତ କଲେ ।

ଚର ତା'ର ସମସ୍ତ ସନ୍ଧାନ ଆଣି ଦେଲାପରେ ପଡ଼ିଲା ଡାସିଆର ପାଳି । ଲୋକ ଯାଇ ତାକୁ ଡାକି ଆଣିଲେ । ବହୁତ ଟଙ୍କା ପଇସାର ଲୋଭ ଦେଖାଇ ପାଲିଟିକୁ ମାଗିଲେ । ମାତ୍ର ଡାସିଆ ମୋଟେ ରାଜି ହେଲେନି । ତେଣୁ ଚାଲିଲା ତା ଉପରେ ଅତ୍ୟାଚାର ।

ଡାସିଆ ବି ଖୁବ୍ ଜୋରଦାର ଏବଂ ସାହାସୀ ଥିଲା; ତେଣୁ ଏମାନଙ୍କ ଧମକରେ ଦେବି ନ ଯାଇ ହାତାହାତି ହେବାକୁ ଲାଗିଲା । ଏହି ହାତାହାତିରେ ସାମନ୍ତଙ୍କର ଦୁଇଟି ପଲ୍ଲିମାନ ସଂସାରରୁ ବିଦାୟ ଗ୍ରହଣ କଲେ । ଡାସିଆର ମୁଣ୍ଡ ଫାଟିଗଲା । ରକ୍ତର ପ୍ରଚଣ୍ଡ ଧାର ଛୁଟିବା ସଙ୍ଗେ ସଙ୍ଗେ ବିଚରା ପଡ଼ିଗଲା ବେହୋସ୍ ହୋଇ ।

ଏହି ଶୁଭ ସୁଯୋଗରେ ସାମନ୍ତଙ୍କ ତାକୁ ବନ୍ଦୀ କରି ପକାଇଲେ ଡାସିଆର ବିଳମ୍ବ ଦେଖି ପାଲି ଓ ପଦ୍ମକୁମାର ପହଞ୍ଚିବା ଦେଖି ସାମନ୍ତଙ୍କ ଆନନ୍ଦରେ ସ୍ୱର୍ଗକୁ ଉଠିଲାପରି ମନେ କଲେ । ଅନୁଚରମାନଙ୍କ ପ୍ରତି ଆଦେଶ ଦେଲେ ଯୁବକକୁ ବନ୍ଦୀକରି ଯୁବତୀକୁ କରଗତ କରିବାପାଇଁ ।

ଅନୁଚରମାନେ ପ୍ରସ୍ତୁତ ହୋଇ ଠିଆ ହେଲେ । ଅଳ୍ପବାଟ ଝୁଡ଼ି ବୋହିବାକୁ ଲାଗିଲା । ଅଦ୍ଭୁତ ଧସ୍ତାଧସ୍ତି ପରେ ପଦ୍ମକୁମାର ଓ ହେଲେ ବନ୍ଦୀ । ପାଣ୍ଡି ପଡ଼ିଲା ସାମନ୍ତଙ୍କ ମାଆ ଜାଣିଲେ । ତାଙ୍କୁ ନାନା ପ୍ରକାର ମଧୁର କଥାରେ ଭୁଲାଇ ଭଲ ଲୁଗା, ଭଲ ଗହଣା ପିନ୍ଧାଇ ଦେଲେ । କୋଇଲର ଗୋଟିଏ ନିଭୃତ କୋଠରୀରେ ଦାସିଆ ଓ ପଦ୍ମକୁମାରକୁ ବନ୍ଦୀ କରି ବାହୁଡ଼ା ବନ୍ଦୋବସ୍ତ କରିବାକୁ ପ୍ରସ୍ତୁତ ହୋଇଗଲେ ।

ସାରଙ୍ଗ ଯେଉଁ ଠାପୁରେ ଦସ୍ୟୁବୃତ୍ତି ଶିକ୍ଷା କରୁଥିଲା, ସେ ଠାପୁଟି ହେଉଛି ସାମନ୍ତମାନଙ୍କର ପ୍ରଧାନ ଆଡ୍‌ଡା ସ୍ଥଳ । ଦସ୍ୟୁବୃତ୍ତିର ସମସ୍ତ ଉପକରଣ, କାରାଗୃହ ଓ ଦସ୍ୟୁମାନଙ୍କ ବାସସ୍ଥଳ ଏବଂ ଖାଦ୍ୟ ଲୁଣ୍ଠାଦିର ଗୋଦାମ ଇତ୍ୟାଦି ଅନେକ ପ୍ରକାର ସୁବିଧା ସେହିଠାରେ ଥାଏ । ଏତେ କୌଶଳରେ ଅଡ୍‌ଡାଟିଏ ନିର୍ମାଣ ହୋଇଥାଏ ଯେ ସହଜରେ ଲୋକଲୋଚନରେ ପଡ଼ିବା ଅସମ୍ଭବ କଥା । ବଡ଼ ବଡ଼ ଶହେହଜାର ଦସ୍ୟୁ ସେଠାରେ ମହଜୁଦ୍ ଥାଆନ୍ତି । କାରାଗୃହରେ ନାରୀ, ପୁରୁଷ ବନ୍ଦୀମାନଙ୍କ ସଂଖ୍ୟାମଧ୍ୟ ପଚାଶରୁ ବେଶୀ ।

ମନ୍ତ୍ରୀପୁଅ ସାରଙ୍ଗ । ବୁଦ୍ଧି ବୃତ୍ତିରେ ଅତି ଧୁରନ୍ଧର । ଲୋକ-ମାନଙ୍କୁ ଆପଣାର କରିପାରେ ଯେମିତି, ମିଶିପାରେ ମଧ୍ୟ ସେମିତି । ସେ ଏଠାକୁ ଆସିବା ଦିନଠାରୁ କଥାବାର୍ତ୍ତା, ଚାଲିଚଳନ, ଆଚାର ବ୍ୟବହାରରେ ଦସ୍ୟୁମାନଙ୍କ ମନ ଜିଣି ନେଇଛି । ସମସ୍ତେ ତା କଥାକୁ ତଳେ ପକାଇ ଦେବାକୁ ବି ଇଚ୍ଛା କରୁନାହାନ୍ତି । ସେତେ ହୁଣ୍ଡା, ଗୁଣ୍ଡା, ଦୁଷ୍ଟ, ବଦମାସ ସମସ୍ତଙ୍କର ପ୍ରିୟ ହୋଇ ଗଲାଣି ସାରଙ୍ଗ । ତେଣୁ ସମସ୍ତେ ତା କଥାକୁ ଅକ୍ଷରେ ଅକ୍ଷରେ ମାନି ଚଳିବାକୁ ଖୁବ୍ ଭଲ ମନେ କରୁଥାନ୍ତି ।

ଥରେ ସାରଙ୍ଗ ଗୋଟିଏ ସଭା ବସାଇ ଦସ୍ୟୁମାନଙ୍କୁ ପ୍ରାଞ୍ଜଳ ଭାବେ ବୁଝାଇ ଦେଲା—ଦେଖ ଭାଇ ! ଆମେ ଶହ ଶହ ଦସ୍ୟୁ ନିଜ

ଶାସନରୁ ହଟନ୍ତୁ, ଜଣେ ନିଜ ଦେଶ ଶାସକମାନଙ୍କ ନିକଟରେ ସେହିଁ ଖୋଜି ଖୋଜୁଛନ୍ତି ତାହା କାହାପାଇଁ ?

ସମସ୍ତେ ସମସ୍ୱରରେ ଉତ୍ତର ଦେଲେ—ସାମନ୍ତଙ୍କ ପାଇଁ ।

ସାରଙ୍ଗ କହିଲା ଉତ୍ତମ କଥା । ଆଜି ତୁମ୍ଭମାନଙ୍କ ବାହୁ ବଳରେ ସାମନ୍ତମାନେ କୋଟିପତି ହୋଇ ବସିଛନ୍ତି । ନିଜ ମଣିଷର ତଟକା ରକ୍ତରେ ହାତ ରଙ୍ଗ କରି ତୁମ୍ଭେମାନେ ଜୀବନ ପାଇଁ ଯେଉଁ ପାପଗୁଡ଼ିକ ସଞ୍ଚୟ କରୁଛ, ସେ କ'ଣ ସେଥିରୁ ଭାଗ ନେବେ ନା ତାଙ୍କ ଧନ ସମ୍ପତ୍ତିରୁ ତୁମକୁ ଭାଗ ଦେବେ ?

ଜଣେ ପୁରାତନ ଦସ୍ୟୁ କହିଲା—ଦସ୍ୟୁ ରତ୍ନାକର ମଣିଷ ମାରି ଯେଉଁ ଧନ ନେଉଥିଲା, ସେଥିରେ କୁଟୁମ୍ବ ପୋଷୁଥିଲା । ଅଥଚ ବେଳକୁ ପାପଟା ସମସ୍ତଙ୍କୁ ବାଣ୍ଟି ଭୋଗ କରିବାକୁ ପଚାରିବାରୁ ପରେ ସମସ୍ତେ ମନା କରିଦେଲେ । ସାମନ୍ତର କେମିତି ଏ କଥାପାଇଁ ମନା ନ କରିବେ କାହିଁକି ?

ଗୋଟିଏ ହୁଲସ୍ଥୁଲ କାଣ୍ଡ ଉଠିଲା । ସମସ୍ତେ ସାମନ୍ତଙ୍କ ଉପରେ ବିରକ୍ତ ହୋଇ ଦସ୍ୟୁବୃତ୍ତି ଛାଡ଼ିଦେଇଯିବାକୁ ସ୍ଥିରକଲେ ।

ସାରଙ୍ଗ କହିଲା—ସେ କଥା ନୁହେଁ । ତୁମେମାନେ ନିଜ ନିଜ ବାହୁ ବଳରେ ସାମନ୍ତଙ୍କ ମାଫତରେ କୋଟି କୋଟି ଟଙ୍କା ଠୁଳକରି ଖାଇ ପରି ଚାଲିଯିବା ଉଚିତ ହେବନି । ମୋ କଥାନୁସାରେ କାର୍ଯ୍ୟ-କଲେ ମୁଁ ନିଜେ ସେ ସମସ୍ତ ଧନ ତୁମ୍ଭମାନଙ୍କୁ ବାଣ୍ଟିଦେବି ।

ଦସ୍ୟୁମାନେ ଏ କଥାରେ ଏକମତ ହୋଇଯିବାରୁ କାର୍ଯ୍ୟର ଧାରା ଭିନ୍ନ ପ୍ରକାର ବଦଳିବାକୁ ଲାଗିଲା । କାରାଗୃହରେ ଥିବା ବନ୍ଦୀମାନେ ମୁକ୍ତି ପାଇଲେ ଏବଂ ଦସ୍ୟୁମାନଙ୍କ ସଙ୍ଗେ ଘର ଉଆଣୀ ପରି ଚାଲିଲେ । ସମସ୍ତଙ୍କର ମେଣ୍ଟ ହେଲା ସାମନ୍ତଙ୍କ ବିରୁଦ୍ଧରେ ।

ହଠାତ୍ ଦିନେ ସେହି ଅଧିବେଶନେ ପଦ୍ମକୁମାର ଓ ଜାଗିଆ ବନ୍ଦୀ ହୋଇ ଉନ୍ତେ ସେହିଠି ଡଙ୍ଗୀରେ ଦଶାଗଣେ ସେହି ଠାବୁରେ ବନ୍ଦୀ ହେବାପାଇଁ ।

କୁମାରକୁ ଆଜି ଆସନରେ ଦେଖି ସାରଙ୍ଗ ଆନନ୍ଦ ହୋଇ ଯେତିକି, ତା'ର ଦୁରବସ୍ଥା ଦେଖି ଦୁଃଖିତ ହୋଇ ସେତିକି । ଆଖି କୋଣ ଦେଇ ଲୁହ ବହି ଆସିଲା ।

କୁମାର ମଧ୍ୟ କିଛି ଜାଣି ଆସୁଥିଲା । କିନ୍ତୁ ସାରଙ୍ଗର ଇଙ୍ଗିତରେ ଚୁପ୍ ରହିବାକୁ ହେଲା ତାକୁ । ଆଗନ୍ତୁକମାନେ ବନ୍ଦୀ ଦୁହିଁଙ୍କୁ ଠାପୁର କର୍ମକର୍ତ୍ତାମାନଙ୍କ ଜିମାରେ ଦେଇ ପ୍ରସ୍ଥାନ କଲେ । ସାରଙ୍ଗ ବନ୍ଦୀମାନଙ୍କ ବନ୍ଧନ ଖୋଲିଦେଲା ଓ ପଦ୍ମକୁମାର ସଙ୍ଗେ ଏକାନ୍ତରେ ଯାଇ ସମସ୍ତ ବିଷୟ କଥାବାର୍ତ୍ତା ହେଲା । ଦୁହେଁ ଦୁହିଁଙ୍କ ଦୁଃଖ ସୁଖ ବିଷୟ କଥାବାର୍ତ୍ତା ହୋଇ ଅନେକ କନ୍ଦାକଟା କଲେ । ଆଉ ଏ ଦୁଃଖ ବେଶିଦିନ ନୁହେଁ ବୋଲି ସାରଙ୍ଗ ତାକୁ ଜଣାଇଦେଲା ।

ତା'ପରେ ଡକାହେଲା ଦସ୍ୟୁ ସଭା । ଦେଖୁ ଦେଖୁ ସମସ୍ତେ ଆସି ପଡ଼ିଆରେ ରୁଣ୍ଡ ହେଲେ । ସାରଙ୍ଗ ସମସ୍ତଙ୍କୁ ଲକ୍ଷ୍ୟକରି କହିଲା—ଭାଇମାନେ ! ଆମ୍ଭମାନଙ୍କ ମୁକ୍ତି ଦିବସ ଉପଲକ୍ଷେ ମୁଁ ଗୋଟିଏ ଗୀତ ରଚନା କରିଛି । ସମସ୍ତଙ୍କ ଅନୁମତି ହେଲେ ସଙ୍ଗୀତ ଜରିଆରେ ଗାଇ ଜୀବନକୁ ଉତ୍ସାହିତ କରିବି ।

ସମସ୍ତେ ଏକସ୍ୱରେ କହିଉଠିଲେ—ବୋଲ୍ଯାଉ ।

ସାରଙ୍ଗ ବୋଲିଲା—

ମୁକତି କାହାଣୀ ବାଜୁଛି ଭାଇରେ କାନ ପାଖେ ଘନ ଘନ
ଶକତି ଖଟାଇ ପରକୁ ଦେଉଛେ ନିଜ ଅରଜିବା ଧନ ।୦।
ବନ୍ଦୀଠାରୁ ବଳି ଆମ ଦୁରଦଶା
ପର ତର୍ଜ୍ଜି ରଣ ଚିପା କା ଲାଗି ବେଉସା ?
କାହାଲାଗି ଆମେ ପାପ ସାଗରରେ ଝାସିଲୁ କହ ଜୀବନ ।୧।

ନର ରକ୍ତେ ଖେଳ ଆମେ ନିତ୍ୟ ପ୍ରତି
ବଢ଼ାଇଲୁ କହ କାହା ପ୍ରତିପତ୍ତି
ନିଜ ପାଇଁ କହ କି ଅବା ସଞ୍ଚିଛୁ ସ୍ମୃତି ର କିଛି ଖଣ୍ଡ ମନ ।୨।

ଅନ୍ୟପଣ ଆମେ କେବେ ନ ମାନିଲୁ
କାହାର ସୁଅରେ ଭାସି ଭାସି ମଲୁ
ଘଉଷ ଖଣ୍ଡକୁ ବୋଲି ହେଲୁ ଅଙ୍ଗେ ବର୍ବର କରି ଚନ୍ଦନ ।୩।

ସବୁ କଥା ଭାଇ ମନରେ ବିଚାର
ପ୍ରତିଶୋଧ ଲାଗି ଆସରେ ବାହାର
ଆମ ବାଳ ଆମ ହାତେ ହାତେ ଆମେ କରି ପାରିବା ସାଧନ ।୪।

ରକ୍ତ ଦେଇ ଆମେ ଅର୍ଜିଛୁ ଯାହା
ଖଣ୍ଡେ ଚାନ୍ଦାଘରେ ଉଡ଼ାଉଛୁ ତାହା
ମୂକପରି ଆମେ ଦେଖୁଅଛୁ ମାତ୍ର ନ ଆସେ ପ୍ରାଣେ ଚେତନ ।୫।

ଆସିଅଛି ବେଳ ଆସରେ ମୋ ଭାଇ
ବାଜ ହାସଲତ କରିବାର ପାଇଁ
ବନ୍ଦୀହୋଇ ଆଜ କୁମର ସଦନେ ଅସିଛି ରାଜନନ୍ଦନ ।୬।

ଦେଶର ଜାତିର ମାନ ରଖିବାକୁ
ସିଂହପରି ଫୁଲାଇଣ ଓଠାଉ ବୁକୁ
ମୁକ୍ତିପଥ ଶଙ୍ଖ ବଜାଅରେ ଭାଇ କର୍ମକ୍ଷେତ୍ରେ ଚିର ବନ ।୭।

ହଠାତ୍ ଜଣେ ଦସ୍ୟୁ ମଧ୍ୟସ୍ଥଳରେ ଠିଆହୋଇ ପଚାରି-ଦେଲା—ବନ୍ଦୀ ରାଜନନ୍ଦନ ?

ସାରଙ୍ଗ କହିଲା—ହଁ ଭାଇମାନେ ! ତୁମମାନଙ୍କ ଉତ୍କଳ ମହାରାଜାଙ୍କ ପୁତ୍ର ଚନ୍ଦ୍ରକୁମାର ଆଜ ସାମନ୍ତରାୟ ହସ୍ତରେ ବନ୍ଦୀ ।

କଥାଟା ଶୁଣି ଦସ୍ୟୁ ମହଲରେ ଗୋଟାଏ ପ୍ରଳୟଙ୍କର ଝଡ଼ ଉଠିଲା । ଦଳେ କହିଲେ—ବଦମାସ ସାମନ୍ତରାୟକୁ ଖଣ୍ଡ ଖଣ୍ଡ କରି କାଟି ପକାଇବା ଚାଲ ।

ସାରଙ୍ଗ କହିଲା—ଅସ୍ତ୍ରଧର ଭାଇମାନେ ! ବର୍ତ୍ତମାନ ସେ ସମୟ ଆସିଯାଇଛି । ଯାହା ଲୁଣ୍ଠନ କରିଥିବ, ସେ ସବୁ ଉତ୍କଳ ମହାରାଜାଙ୍କ ଉପସ୍ଥିତିରେ । ତୁମମାନଙ୍କ ଅର୍ଜିତ ଧନରାଶି ବାଣ୍ଟି-ଦେବ ସମାନଭାବେ । ବର୍ତ୍ତମାନ ରଜାପୁଅଙ୍କ ଦୁର୍ଦ୍ଦଶା କଥା ଶୁଣିନିଅ ।

ସମସ୍ତେ ଉତ୍କଣ୍ଠା ହୋଇ ଶୁଣିବାକୁ ବସିଲେ । ପଦ୍ମକୁମାର ତା' କଥାଠାରୁ କହିଲା । ତା'ପରେ ଭାସିଆ ତା' କଥାରୁ କହିଲା । ସାରଙ୍ଗ ସେଦିନଯାଏ ନିଜର ପରିଚୟ ଦେଇ ନ ଥିଲା । ତେଣୁ ସେହିଦିନ ନିଜ କଥା ଗୁଡ଼ାକ କହିଗଲା ।

ଶୁଣି ଶୁଣି କଷ୍ଟରେ ଦସ୍ୟୁମାନଙ୍କ ଆଖିରେ ବି ଲୁହ ଦେଖା-ଗଲା ତେଣିକି । ଦଳେ ସେହିକ୍ଷଣି ଯାଇ ସାମନ୍ତରାଙ୍କୁ ହତ୍ୟା କରି-ବାକୁ ଉଠିଲେ । ସାରଙ୍ଗ କହିଲା—ଧୈର୍ଯ୍ୟଧର ! ସାମନ୍ତରାଙ୍କୁ ହତ୍ୟା କଲେ ତୁମମାନଙ୍କ ଆଶା ପୂରଣ କରିବ କିଏ ?

ସେମାନେ ସ୍ଥିର ହେଲେ । କେବଳ କଥା ହେଲା—ରଜାପୁଅଙ୍କ ସଙ୍ଗୀମାନଙ୍କୁ ସେ ଧାଡ଼ିଆ ହାତରୁ ଫେରାଇବାପାଇଁ । ତେଣୁ ଗୁରୁଜନ୍ମା ବଳିଷ୍ଠ ଦସ୍ୟୁ ନଅଜଣ ପଦ୍ମକୁମାର ବୋଇତରେ ବସି ସେଠାକୁ ବାହାରି ପଡ଼ିଲେ ।

ସାରଙ୍ଗ ସାମନ୍ତରାଙ୍କ ପାଖକୁ ପତ୍ର ଲେଖି ପଠାଇଲା—ସାମନ୍ତରା ମହାଶୟ ଜାଣିବେ—

ଧନରତ୍ନ ବୋଝେଇ ଏକୋଇଶ ଖଣ୍ଡ ବୋଇତ ସମୁଦ୍ରରେ ଆସୁଛି । ସେଥିରେ ଜଗୁଆଳି ଅଛନ୍ତି ବହୁ ବହୁ ମଲ୍ଲମାନ ଦୁଇଶହ । ଆମେ ଯାଉଛୁ ତାକୁ ଆକ୍ରମଣ କରି ଲୁଟପାଟ କରିବାକୁ । ଏଠାରେ ଆମ ଦସ୍ୟୁମାନଙ୍କ ସଂଖ୍ୟା ମୋଟେ ଶହେ । ଏଣୁ ଜଣାଇଲି । ଆପଣଙ୍କ ସଦର ମହକୁମାରେ ଯେତେ ଦସ୍ୟୁ ଅଛନ୍ତି

ହୋଇ ହତିଆର ସହିତ ସେମାନଙ୍କୁ ସହସା ଏଠାକୁ ପଠାଇ ଦିଅନ୍ତୁ । ଇତି ।

ପତ୍ରବାହକ ଡଙ୍ଗୀରେ ଯାଇ ଯଥାସମୟରେ ପତ୍ରଟି ପହଞ୍ଚାଇ ଦେଲା । ସାମନ୍ତରା ସେତେବେଳେ ଥିଲେ ବିଳାସ କକ୍ଷରେ । ଯାହାକୁ ପାଇ ସେ ଆତ୍ମହରା ହୋଇ ପଡନ୍ତି । ଯାହା ମଧ୍ୟ ଧନ, ରତ୍ନ, ବସ୍ତ୍ର ଓ ଅଳଙ୍କାର ଭିତରେ ସବୁ ଯାଉଛି ପକାଇଛନ୍ତି ।

ଯେଉଁ ବାପା ଛାତିର ରକ୍ତ ଦେଇ ମା'ଛେଉଣ୍ଡ ପାଲିକୁ ମଣିଷ କରି ଗଢ଼ିଥିଲା, ସେ ବନ୍ଦୀ । ତା ଉପରେ ପୁଣି ଅମାନୁଷିକ ଅତ୍ୟାଚାର ହେବା କଥା ନିଜ ଆଖିରେ ଦେଖିଛି । ଓଡ଼ିଶାର ରାଜପୁତ୍ର ମଦନକୁମାର । ଯେ କି ଅଗ୍ରଜଙ୍କ ବଉଳ ବିଳାସ ଛାଡ଼ି ଯାଇଥିଲା—ଯାହା ନିମନ୍ତେ ପଦ୍ମ ଚୂଡ଼ାରେ କାଳ କଟାଇବି । ଆଉ ରାଜପୁତ୍ରଙ୍କୁ ଦେଇଥିଲା କାହିଁ । ସେଭଳି ଜଣେ ସ୍ନେହ, ସୁନ୍ଦର, ସୁକୁମାର, ତରୁଣ ପ୍ରେମ ପ୍ରୀତିକି ମଧ୍ୟ ପାଦରେ ଠେଲିଦେଲା । ଆଶ୍ଚର୍ଯ୍ୟ ରମଣୀର ଚରିତ୍ର । ସାମାନ୍ୟ ମୂର୍ଖ ସ୍ୱାର୍ଥ ମୋହରେ ଭୁଲି ଏପାଖେ ଜନକ ଜନ୍ମଦାତା ପିତା ଓ ଅନ୍ୟ ପାଖେ ସମବୟସ୍କ ସୁନ୍ଦର ଯୁବକର ପ୍ରେମକୁ ଜଳାଞ୍ଜଳି ଦେଇ ଜଣେ ପଚାଶ ବର୍ଷର ପ୍ରୌଢ଼ ନିକଟରେ ଯୌବନ ବିକିଦେଲା କାହିଁକି ?

ବୃଦ୍ଧ ସାମନ୍ତରଙ୍କୁ ତ ତାହାର ଖେଳନା କରିବାକୁ । ହଁ, ନଚେତ ଯୁବ ଚଢ଼େଇ ହୋଇ ମୋର ପିଞ୍ଜରାରେ ଝୁଲିବାକୁ ? ନଜାଣି ପଣ୍ଡିତମାନେ କହିଛନ୍ତି—

> ସ୍ତ୍ରୀଷୁ ଚରିତ୍ର ପୁରୁଷସ୍ୟ ଭାଗ୍ୟ
> ଦେବୋ ନ ଜାନାତି କୁତୋଃ ମନୁଷ୍ୟ ?
> ପୁରୁଷଙ୍କ ଭାଗ୍ୟ ନାରୀଙ୍କର ଚରିତ୍ର
> ମାନବେ ଜାଣିବେ କାହୁଁ ଦେବେ ଅବିଦିତ ।

ପାଲି ବର୍ତ୍ତମାନ ପାଲି ହୋଇ ନାହିଁ । ନାଲି ହୋଇ ଯାଇଛି । ତା'ର ଛବି ଦେଖିଲେ ମଣିଷ ତାଲୁ ଅଉଁଶି ହାଲିଆ ହୋଇଯିବାର କଥା ।

ସାମନ୍ତ ତାହାର ଖେଳନା କୁଣ୍ଢେଇ । ସେ ଉଭେ ଦୁହେଁ ପଲଙ୍କ ଉପରେ ବସି ହସ ଖୁସିରେ ମାତିଲାବେଳେ ପାଲି ଟିକିଏ ଶଙ୍କିତା ହୋଇ କହିଲା—ହଇ ହେ, ତୁମେ ମୋ ବାପା ସଙ୍ଗେ ଯୋଉ ଯୁବକଟିକୁ ବନ୍ଦୀ କରିଥିଲ, ତାଙ୍କୁ କ'ଣ କଲ ?

ସାମନ୍ତ ଟିକିଏ କାବା ହୋଇ ପଚାରିଲେ—କାହିଁକି ?

ପାଲି କହିଲା—ମୋର ଜରୁର ଦରକାର । ନ ହେଲେ ତୁମେ କି ମୁଁ ନିରାପଦରେ ଅଛୁ ବୋଲି କୁହାଯାଇ ପାରିବନି ।

ସାମନ୍ତ କହିଲେ—ସେମାନେ ସମୁଦ୍ର ମଝିରେ ପାହାଡ଼ ଘର ଭିତରେ ବନ୍ଦୀ ହୋଇ ପଡ଼ିଛନ୍ତି । ନ ଖାଇ ନ ପିଇ ଶୁଖି ଶୁଖି ମରିବେ ।

ପାଲି କହିଲା—ସେ ଦୁହିଁଙ୍କୁ ଶୀଘ୍ର ମରାଇଦିଅ । ତା' ନ ହେଲେ ଆମେ ଶାନ୍ତିରେ ରହି ପାରିବାନି । ତାଙ୍କ କଥା ଭାବି ଭାବି ମୋ ପେଟ ଭିତରେ ପାଣି ଆସୁନି । ନାନା ପ୍ରକାର ଦୁଃସ୍ୱପ୍ନ ଦେଖୁଛି । ସେ ଦୁହେଁ ଯାକ ବାଘ ଅପେକ୍ଷା ଆହୁରି ଭୟଙ୍କର । ପ୍ରାଣରେ ବଞ୍ଚି ରହିଲେ ଯେମିତିହେଲେ ସେମିତି ଆମ ପ୍ରତିଶୋଧ ନେବେ ।

ସାମନ୍ତ ହସିଲେ । କହିଲେ—ତୁମେ ଭାରି ଭୀରୁ ପାଲି । ସେମାନେ ଯୋଉ ଘରେ ଆବଦ୍ଧ ହୋଇଛନ୍ତି, ସେଠୁ ମୁକୁଳିବା ସହଜ ନୁହେଁ ।

ପାଲି କପଟ ଅଭିମାନରେ ଆଖି ଛଳ ଛଳ କରି କହିଲା—ଯଦି ତାଙ୍କୁ ମରାଇ ନ ଦିଅ, ତେବେ ମୁଁ ବିଷ ଖାଇଦେବି ।

ସେମାନେ ବନ୍ଧୁ ଭାବିଥିଲେ ଯିଏ ଓ ତାଙ୍କର ହାତରେ ମରିବାକୁ ପଡ଼ିଲା । ଆଜିଠୁଁ ମତେ କି ମିତ୍ର ବାଛିବ ?

ଯାଲୀର ଅଭିମାନ ଦେଖି ସାମନ୍ତରା ଆଉ କ'ଣ କରିବେ ବାଧ୍ୟ ହୋଇ ଅଧ୍ୟକ୍ଷ ଜଣକଙ୍କୁ ପତ୍ର ଦେଇଥିଲେ—ଆମ ନୂଆ ଗୃହିଣୀଙ୍କ ଆଦେଶ—ନୂତନ ବନ୍ଦୀ ବୃଦ୍ଧଙ୍କ ମୁଣ୍ଡ କାଟି ଏଠାକୁ ପଠାଇ ଦିଅ । ଠିକ୍ ଏତିକିବେଳେ ସାଉଙ୍କ ପଠାଇଥିବା ପତ୍ର ଖଣ୍ଡିକ ଜଣେ ଦାସ ପହଞ୍ଚି ଦେଇ ତାଙ୍କୁ ଦେଲା ।

ସେଇଟି ପଢ଼ି ସାମନ୍ତରା ଶିହରି ଉଠିଲେ ଓ ସାଉଙ୍କର ତୀକ୍ଷ୍ଣ ବୁଦ୍ଧିକୁ କେବଳ ପ୍ରଶଂସା କରି ସବୁ ଯୋଗାଡ଼ କରିବାକୁ ଲାଗିଲେ ତାଙ୍କୁ । ଯାତ୍ରୀ ସେଠାକୁ ଆସିଥିବା ଆଉ ଜଣକ ସାମନ୍ତରାଙ୍କଠାରୁ ଅନେକ ନେଇ ଦେଉଥିଲେ ।

ସନ୍ଧ୍ୟାବେଳେ ଯଥା ସମୟରେ ବୋଲିତ ନେଇ ପୂର୍ବୋକ୍ତ ଜଙ୍ଗଲୀ-ମାନଙ୍କ ପଲ୍ଲୀରେ ପହଞ୍ଚିଲେ । ସଙ୍ଗୀଲୋକମାନେ ଖୁବ୍ ଭୟରେ ଥିଲେ । ଦେଖାଦେଖି ମାତ୍ରେ ପ୍ରଥମେ କାନ୍ଦକଟା, ତା ପରେ ଦୁଃଖ ସୁଖ କଥା ହେଲା । ଜଙ୍ଗଲୀମାନେ ଆସି ଘେରି ବସିଲେ । ମଧୁସାହାଣି ବୃଦ୍ଧ ମରିବା କଥା ଶୁଣି ତା ପରିବାର ଶୋକସାଗରରେ ଭାସିଲେ । ତା ପରେ ଅତୀତର କଥା । ଖୁସି ମନରେ ସେଠାରୁ ବିଦାୟ ନେଇ ସମସ୍ତେ ଆସିଲେ । ପୂର୍ବୋକ୍ତ ସୌଦାଗରଙ୍କ ପତ୍ନୀ ଓ ତାଙ୍କ ଧନ-ରତ୍ନ ବି ଆସିଲା । ଯଥା ସମୟରେ ସମସ୍ତେ ଆସି ସଙ୍ଗେ ସଙ୍ଗେ ଦେଖା ସାକ୍ଷାତ କଲେ ।

ସାଉଙ୍କଙ୍କୁ ସେମାନଙ୍କ ଇତିହାସ ସାଉଙ୍କ କି ଜଣାଇ ଦେଲେ । ସମସ୍ତ ସୌଦାଗରଙ୍କ ଯୁବତୀ ପତ୍ନୀଙ୍କୁ ଦେଖି, ସ୍ୱାମୀଙ୍କ ମରଣ କଥା କଥା ଶୁଣି ଖୁବ୍ ଦୁଃଖିତ ହେଲେ । ସେମାନଙ୍କ ମଧ୍ୟରୁ ଯେଉଁ କନ୍ୟାମାନଙ୍କରେ ଯେତେଜଣ ସମ୍ପୃକ୍ତ ଥିଲେ, ସେମାନେ ମଧ୍ୟ ଅସ୍ୱାଭାବିକ କଥାମାନ ଜଣାଇଲେ । ଖୁବ୍ ଦୁଃଖିତ ହେଲେ ।

ସାରଙ୍ଗର ପ୍ରଖର ବୁଦ୍ଧି, ଲୋକପ୍ରିୟତା ଏବଂ କଥା କହିବା ଭଙ୍ଗୀ ଆଜି ଗୋଟାଏ ନିଷ୍ଠୁର ଜଗତକୁ ବଦଳାଇ ଦେଉଛି—ପଥରକୁ ପାଣି କରାଇ ଦେଉଛି । ଘର ସଇସଠାରୁ ଆରମ୍ଭ କରି ହୁଦସ୍ତଦାର ପର୍ଯ୍ୟନ୍ତ ସମସ୍ତେ ଆଜି ଦେବତା ପାଲଟିଛନ୍ତି । ଅନ୍ୟାୟ ବିରୁଦ୍ଧରେ ଲଢ଼ିବା ପାଇଁ ସମସ୍ତଙ୍କ ଜୀବନସ୍ରୋତ ଏକ ହୋଇ ବହୁଛନ୍ତି । ସମସ୍ତେ ଆଜି ଗୋଟିଏ ପଥର ଯାତ୍ରୀ । କାହାରି କାହା ପ୍ରତି ହିଂସା ନାହିଁ, କ୍ରୋଧ ନାହିଁ । ଅଛି କେବଳ ଅନ୍ତରର ନମ୍ରତା, ସହାନୁଭୂତି ଓ ଦୟା ।

ଏ ସମସ୍ତ ଜାଣି ପାରନ୍ତି ଶାରଙ୍ଗ ! ନିଜେ ଯାଇଥିବା ନୋଟି କେତୋଟି ଟଙ୍କାର ମନିଅର୍ଡର ଅଧିକାରୀମାନେ ସାମନ୍ତଙ୍କୁ ସମର୍ପିଦେଇ । ଯେତେବେଳେ ଏ ପ୍ରବଳ ପରାକ୍ରାନ୍ତ ଜଳଦସ୍ୟୁ ସାମନ୍ତଙ୍କ ମହାପାପର ଅନ୍ତିମ ପରଦା ଟଣାହେବ, ସେତେବେଳେ ସମସ୍ତେ ଦେଖି ପାରିବେ ଓ ଶୁଣି ପାରିବେ ମନ୍ତ୍ରୀପୁତ୍ର ସାରଙ୍ଗର ତ୍ୟାଗ ଓ ଦୁଃସାହସର ପ୍ରଚଣ୍ଡ କାହାଣୀ ।

ସାମନ୍ତଙ୍କ ନିକଟକୁ ଯାଇଥିବା ପକ୍ଷୀ ବାହୁଡ଼ି ଫେରିଛି । ତା', ହାତରେ ଖଣ୍ଡେ ଚିଠି । ଖୁବ୍ ଗୁପ୍ତ କଥା । ଟାପୁର ଅଧ୍ୟକ୍ଷ ଛଡ଼ା ଅନ୍ୟ କେହି ସେ ଚିଠି ଦେଖି ପାରିବେନି । ସୈନ୍ୟସବୁ ଅଳ୍ପରେ ଆସି ପହଞ୍ଚିବେ ।

ଟାପୁ ଅଧ୍ୟକ୍ଷ ଚିଠି ନେଲେ । ଟିକିଏ ପଢ଼ିବା ମାତ୍ରେ ମୁରୁକି ହସଟିଏ ହସି ବଢ଼ାଇ ଦେଲେ ସାରଙ୍ଗ ହାତକୁ । ସାରଙ୍ଗ ସେ ଖଣ୍ଡିକ ପଢ଼ିଦେଲେ ମାତ୍ରେ ମୁହଁ ଉପରେ ଚମକ ଉଠିଲା ତା'ର ଝଲକ । ମୁହଁ ଉଜ୍ଜ୍ୱଳ ଦେଖାଗଲା । ତେଣୁ ସେ ସଭା ଡକାଇ ସମସ୍ତଙ୍କ ଆଗରେ ଚିଠିଟି ପଢ଼ି କହିଲେ—ଭାଇମାନେ ! ସାମନ୍ତଙ୍କ ନୂଆ ଗୃହିଣୀଙ୍କ ହୁକୁମ ହୋଇଛି, ନୂତନ ବନ୍ଦୀ ଦୁଇଜଣ ଅର୍ଥାତ୍

ରାଜପୁତ୍ର ଚନ୍ଦ୍ରକୁମାର ଓ ବଣିକ୍‌ପୁତ୍ର, ଯେ କ ସେହି ଯୁବତୀଙ୍କ ପିତା ଏ ଦୁହିଙ୍କ ମୁଣ୍ଡକାଟି ଯଦି ସେ। ତାଙ୍କ ପାଖକୁ ପଠାଇବାକୁ ହେବ ।

ଦସ୍ୟୁଦଳ ଏକାଥରେ ସାଗରପରି ଗର୍ଜି ଉଠିଲେ— ରାକ୍ଷସୀ ! ଆମେ ସମସ୍ତେ ଖୋଜୁଁ ତାର ମୁଣ୍ଡବଳ ।

ଝିଅକଥା ଶୁଣି ହାସିଆ ଆଖିରୁ ଲୁହ ଗଡ଼ିବାକୁ ଲାଗିଲା । ଚନ୍ଦ୍ରକୁମାର ଚୋରାଙ୍କପରି ମାରଦ ନିଷ୍ଠୁର ସ୍ୱରରେ ଠିଆ ହୋଇ କହିବାକୁ ଲାଗିଲା—

ତସ୍କରସ୍ୟ କୁତୋଧର୍ମୋ ଦୁର୍ଜ୍ଜନସ୍ୟ କୁତଃକ୍ଷମା
ବେଶ୍ୟାନାଞ୍ଚ କୁତଃ ସ୍ନେହଂ କୁତସତ୍ୟଂଚ କାମିନାଂ

ଧର୍ମହୀନ ତସ୍କର—କ୍ଷମାହୀନ ଦୁଷ୍ଟ—ସତ୍ୟହୀନ କାମୁକ— ସ୍ନେହହୀନ ବେଶ୍ୟା ପାଲିକୁ ମୁଁ ହୃଦୟ ଦେଇ ସ୍ନେହ କରିବା ନିଶ୍ଚୟ ଭୁଲ ହୋଇଛି । ସେ ଗୋଟିଏ ବେଶ୍ୟା । ତା ଙ୍କ ହେଲେ ଧନ କେତେତୋଟାରେ ସେ ଭୋଗବିଳାସ ମୋହରେ ସାମନ୍ତଙ୍କର ଏବେ ଆପଣାର ହୋଇଗଲା ଏବଂ ଆମକୁ ମାରିବାପାଇଁ ହୁକୁମ । ସବୁ ଜାଗ୍ରତ ମୁଣ୍ଡ ତା'ର ଘୂରାଇ ଉଠିଲା । ସେ ଆଉ ଠିଆ ହୋଇ ନ ପାରି ବସି ପଡ଼ିଲା ।

ସାମନ୍ତଙ୍କ ସୈନ୍ୟମାନେ ଆସି ପହଞ୍ଚିଲେ ତାପୁରେ । ଖୁବ୍ ଗର୍ଜନତର୍ଜନ ଓ ଭଡ଼ ବଢ଼ିଗଲା । ଧରସ ଖୁସି, ଦେଖାଯାଉଁ, ବନ୍ଧନ ଦର୍ଶନ ଇତ୍ୟାଦି ଆନନ୍ଦ କୋଳାହଳରେ ସମସ୍ତେ ମାତି ଉଠିଲେ । ଏହି ସୁଯୋଗରେ ହାସିଆ ସମୁଦ୍ର ଘର୍ଷଣ ଅନ୍ତର୍ଦ୍ଧାନ ହୋଇଗଲା । ଏ କଥା କେହି ଜାଣିପାରିଲେ ନାହିଁ ।

ଦସ୍ୟୁଦଳପାଇଁ ଉତ୍ସାହବଡ଼ା ହେଲା । ସମସ୍ତେ ବସି ମନ ଖୁସିରେ ଖାଉଛନ୍ତି । ହଠାତ୍ ବସିଲା । ଓଡ଼ିଶା ରଜାପୁଅ, ମନ୍ତ୍ରୀପୁଅ, କଟୁଆଳ ପୁଅଙ୍କ ପରିବର୍ତ୍ତେ ନୂତନ ଦସ୍ୟୁମାନେ

ଯାଇଲେ । ସକଳକଥା ସେମାନଙ୍କୁ ଜଣାଇ ଦିଆଗଲା । ତା’ପରେ ହେଲା ମେଣ୍ଟ ।

ସାଉଙ୍କର ପ୍ରସ୍ତାବକୁ ସମସ୍ତେ ଅକ୍ଷରେ ଅକ୍ଷରେ ମାନି ନେଲେ । ତା’ପରେ ଦୁଇଜଣ ସାହସୀ ଦସ୍ୟୁ ଛଦ୍ମବେଶ ସଜାଇ ଚାଲିଲେ ରାଜଦରବାରକୁ । ସାଉଙ୍କ ଚିଠି ଲେଖିଥିଲା—

ମହାରାଜ !

ଓଡ଼ିଶାର ପ୍ରବଳ ପରାକ୍ରାନ୍ତ ଜଳଦସ୍ୟୁ ଦଣ୍ଡଧର ସାମନ୍ତରାଙ୍କ ସନ୍ଧାନ ଆମେ ପାଇଛୁ । ସେ ବର୍ତ୍ତମାନ ଆମ ହାତମୁଠା ଭିତରେ । ପତ୍ର ପାଇବା ମାତ୍ରେ ଆପଣ ଅଳ୍ପ କିଛି ସିପାହୀ ସେନା ପାର୍ବତୀଙ୍କରେ ପଠାନ୍ତୁ । ଦସ୍ୟୁଦଳ ଆମର ହୋଇଯାଇଛନ୍ତି । ବିଶେଷ କଥାମାନ ଏହିଠାରେ ଜାଣି ପାରିବେ । ଇତି । ସାଉଙ୍କ

ସେଦିନ ରାତି ଘଡ଼ିଏବେଳେ ସମସ୍ତେ ଜାଣିଲେ ଦାଶିଆ ନାହିଁ । କୁଆଡ଼େ ଗଲା ଜଣାହେଲା ନାହିଁ ବହୁତ ଖୋଜା ପଡ଼ିଲା । ମାତ୍ର କିଛି ସନ୍ଧାନ ମିଳିଲା ନାହିଁ । ତେଣୁ ସମସ୍ତେ ବଡ଼ ବ୍ୟସ୍ତ ହୋଇ ଉଠିଲେ । ବୋଧହୁଏ ପାଣିକୁ ଡେଇଁ ଆତ୍ମହତ୍ୟା କରିଛି ବୋଲି ଧରି ନିଆଗଲା ।

ଦାଶିଆ ପ୍ରଚଣ୍ଡ ସାହସୀ । ଦୁଇ ବାହୁରେ ତା’ର ମତ୍ତହସ୍ତୀର ବଳ ପୂରି ରହିଛି । ସିନ୍ଧୁବକ୍ଷରୁ ତା’ର ସମୁଦ୍ରକୁ ପହଁରିବା ଅଭ୍ୟାସ ଥିବାରୁ, ସେ ଆଜି ସମସ୍ତଙ୍କ ଅଲକ୍ଷ୍ୟରେ ପହଁରି ଯାଇଛି । ଯେଉଁ ଡଙ୍ଗୀ ସାମନ୍ତରାଙ୍କ ଆଜ୍ଞାନୁସାରେ କାର୍ଯ୍ୟ ଦେଇ ଆସିଥିଲା, ଦାଶିଆ ପହଁରି ପହଁରି ଅନେକ ଦୂରରେ ତାକୁ ପାଇଲା । ତା’ର ମଙ୍ଗ ଉପରେ ଭର ରଖି ଯାଇ ପହଞ୍ଚିଲା ପାର୍ବତୀପରେ । ଏ କଥା ଡଙ୍ଗୀ ଚାଳକ ମୋଟେ ଜାଣିପାରିଲାନି । ଦସ୍ୟୁମାନଙ୍କ ଖଣ୍ଡେ ଦାଢ଼ୁଆ ଛୁରୀ ଅଣ୍ଟାରେ ଖୋଷି ନେଇଥାଏ । ଉପରେ ପହଞ୍ଚିଲା ମାତ୍ରେ ଛୁରୀକୁ ଗୋଟିଏ ଚୁମ୍ବନ ଦେଇ ବାହାରି ପଡ଼ିଲା ନିଜ କାମରେ ।

ଗ୍ରାମବାସୀମାନଙ୍କ ହାଣ୍ଡି ପିଣ୍ଡାରେ ଥିବା ଧାନଭୁସୁଁଆ ହାଣ୍ଡିରୁ ଗୁଣ୍ଡାଏ କଳା ଆଣି ହାତ ଓ ମୁହଁରେ ହଳଦିଆ କରି ବୋଳିଦେଲେ । ପିନ୍ଧା ଲୁଗାକୁ ଭଉଁରୀ ମାରିଦେଲେ । ଫଙ୍କ ଓ ଟୋକିର ତଳଟି ହିଁ ଗାଲରେ ଏମିତି ଭାବେ ତୋଳ ଦେଲା ଯେ, ଦେଖାଗଲା ଗୋଟିଏ ଫାଲୁଆ ମୁହଁଖଣ୍ଡ ।

ଅନ୍ଧାରରେ ଲୁଚି ଲୁଚି ଚାଲିଥାଏ । ସାମନ୍ତଙ୍କ ଘର ଖୋଜି ଠିକ୍ ଜାଣି ନେବାକୁ ତାକୁ ବେଶୀ ସମୟ ବି ଲାଗିଲାନି । ବେକବାଳଭିଣ୍ଡି ପାଚେରୀ ଉପରେ ଚଢ଼ି ଗୋଟିଏ ଗଛ ସାହାଯ୍ୟରେ ସାଇ ତୋଳାଭୁଁ ଜଣାଠାରେ ପହଞ୍ଚିଲା । ସବୁ ଘର ଅନ୍ଧାର । ଯେଉଁ ଘରଟି ଭିତରେ ଆଲୁଅ ଜଳୁଥିଲା, ସେ ଘରର କବାଟ ବନ୍ଦ ଥିଲା ଭିତରପଟୁ । ପଲଙ୍କ ଉପରେ ଜଣେ ପୁରୁଷ ବୁଢ଼ାଲୋକ ବସି ଜପ ଖୁସିରେ ମାଳ ଥାଆନ୍ତି ।

ହାସିଆ ଜାନଗର ଶୁଣିଲା । ଅଜ ପିଅ ଆୟାର ସ୍ୱର ଶୁଣିବାରେ ତାଁର ଆଉ ସନ୍ଦେହ ରହିଲାନି । ତେଣୁ ଶରୀରର ସମସ୍ତ ଶକ୍ତି ଏକାଠି କରି କବାଟକୁ ଦେଲା ଗୋଟିଏ ଧକ୍କା । ସେହି ଧକ୍କାରେ କବାଟ ଖୋଲିଗଲା ।

ପାଲି ଓ ସାମନ୍ତ ଚମକି ପଡ଼ି ଠିଆ ହୋଇଗଲେ । ଭେଣ୍ଡି କଣ୍ଡକୁ ହାସିଆ ହାତରେ ସମସ୍ତ ମୋଟେ ଜ ଥିଲା । ତେଣୁ ସେ ପ୍ରବଳ ବେଗରେ ସାମନ୍ତଙ୍କ ମୁଣ୍ଡରେ ବସାଇ ଦେଲା ଗୋଟିଏ ପ୍ରଚଣ୍ଡ ବାଡ଼ି । ସେକ୍ଷଣରେ ସେ ଜ୍ଞାନ ହରାଇ ତଳେ ପଡ଼ିଗଲେ ।

ପାଲି ଚିତ୍କାର କରିବା ପୂର୍ବରୁ ହାସିଆ ତାଁର ନାକ ଓ କାନ କାଟି ନେଇ ଚମ୍ପଟ ଦେଲା । ଗ୍ରାମରେ ଲୋକମାନଙ୍କ ଜଣାଜଣି ହେବା ପୂର୍ବରୁ ହାସିଆ ଯାଇ ସମୁଦ୍ର ପାଣି ମଝିରେ ପହଁରୁଛି ଖବରେ ଶୁଣିଲା କାଠଗଡ଼ ଥାନା ।

ସାମନ୍ତଙ୍କର ସୁଦନଗୁଡ଼ିକ ଧରି ଆସି ଦୁର୍ଦ୍ଦମ ଆରମ୍ଭ ହୋଇଛି । ତେଣୁ ସେ ଆଜ ମଣିହରା ଫଣୀପରି ନୂତନ ଗୁଣ୍ଡଣୀଙ୍କୁ କୋଳରେ ଧରି କାନ୍ଦିବାରେ ବ୍ୟସ୍ତ । କେତେମାନେ ଆସି ବନ୍ଧୁଙ୍କ ଚାକିରୀ କଲ୍ଲପରେ ଅଦର୍ଶ୍ୟ ଉକ୍ତ ବନ୍ଦ ହୋଇଛି । ମାନ୍ଦ ରୋଗୀ ବଞ୍ଚିବ କି ନାଁ, ସେ କଥା କେହି ମତ ଦେଇପାରି ନାହାନ୍ତି ।

ପାଲୀର ଯଦ୍ୟପି ସଙ୍ଜ୍ଞା ଫେରିଛି; ତଥାପି ଯନ୍ତ୍ରଣା ଏତେ ଅଧିକ ଅଛି ଯେ, ସେ ମଣିଷ ଚିହ୍ନି ପାରୁନ କି କଥା କହି ପାରୁନ । କେବଳ ଅନ୍ଧକାରରେ ପୂର୍ଣ୍ଣ କରିଛି ଗୃହସାଙ୍ଗ । ହାତରେ ବଳବଳ ଥିଲେବା ହାସିଆକୁ ଧରିବାର ଉପାୟ କରୁଥାନ୍ତେ । ସାମାନ୍ୟ ଲୁକଥ ବାଜଉଙ୍କ ଦ୍ୱାରା ଦଂଶ ହେବ । ସେମାନଙ୍କ ବଳଥିଲେ ସାହସ ନାହିଁ ସାହସ ଥିଲେ ବୁଦ୍ଧି ନାହିଁ । ଦୁର୍ଦ୍ଦାନ୍ତ ଆତତାୟୀ ପକ୍ଷରେ [illegible]କୁ ଦଣ୍ଡଦେଇ [illegible] ହେବ କାହିଁ । ଏ ସବୁ କଥା ଭାବି [illegible] ମନ ଦୁଃଖ ମନରେ ମାରି ରହିଲେ । ଓଲ୍ଟକଥା କଏ ହୋଇଥାରେ ବୋଲି ମନଭିତରେ ଭୁଲିଥାଏ କେବଳ ଭୂମୃକ ସଂଗ୍ରାମ । ଯାହା କିନ୍ତୁ ତେଜ ଆଲୀ ବଞ୍ଚି ଯାଇଛି । ତା କାର୍ଯ୍ୟର ପ୍ରଧାନ ପୁରସ୍କାର ପାଇଛି ଝିଅ ବାପ ହାତରୁ । ସେ ଆଜ ରାମାୟଣ ବର୍ଣ୍ଣିତ ସୂର୍ପଣଖା ।

ଦସ୍ୟୁଦଳ ଆଜ ତା'ର ଶେଷ ସିଦ୍ଧାନ୍ତ ଗ୍ରହଣ କରି ସାରିଛି । ସାରଙ୍ଗଙ୍କ ନିର୍ଦ୍ଦେଶରେ ସମସ୍ତଙ୍କ ଜୀବନ ସ୍ରୋତ ଗଡ଼ିଛି ଏକ ଧ୍ରୁବ ଏବଂ ଏକ ଲକ୍ଷ୍ୟରେ । ସେମାନେ ମଣିଷ ହେବେ, ଆଦର୍ଶ ମଣିଷ । ଏ ନରହତ୍ୟା, ନାରୀ ଲୁଣ୍ଠନ ଲୁଟ୍‌ପାଟ୍ କରି ଦେଶଟାକୁ ରୌରବ ନର୍କରେ ପରିଣତ କରିଦେବେ ନାହିଁ, ବରଂ ଜନଙ୍କ ସମ୍ମୁଖରେ ନିଜର ସତ୍ତା ଲୋପ କରିବେ ନା—ଏହି ହେଲା ଦୃଢ଼ ସଂକଳ୍ପ । ସେହି ସଂକଳ୍ପକୁ ମୂଳ ଭିତ୍ତିକରି କାର୍ଯ୍ୟପନ୍ଥାରେ ସ୍ଥିର ହଆଯାଉଛି ।

ସାମନ୍ତଙ୍କ ଆଦେଶନାମା ଛାଇଆସିବ । ସେ ଆଦେଶନାମାରେ ରହିଥିବ ଉଚିତ ଯୁବରାଜ ପଦ୍ମକୁମାର । ଦସ୍ୟୁଦଳ ସମସ୍ତଙ୍କ ମତ ଗୋଟିଏ । ସେଥିପାଇଁ ସବୁ ବସିଛୁ । କାରାଗୃହରେ ସଢ଼ୁଥିବା ବନ୍ଦୀମାନେ ଓ ବନ୍ଧମାମାନେ ଦସ୍ୟୁଦଳ ସଙ୍ଗେ ଏକମତ ହୋଇ ଲଗିପଡ଼ିଛନ୍ତି ଖେଳ କାମରେ ।

ଷଡ଼ଯନ୍ତ୍ର ସଫଳ ହେଲେ ସମସ୍ତଙ୍କର ହେବ ମୁକ୍ତି । ସଭାର କାର୍ଯ୍ୟ ଆରମ୍ଭ ହେଲାବେଳକୁ ଜଣେ ଓଦା ସରସର ହୋଇ ଛୁଟି ଆସିବାର ଦେଖାଗଲା । ସମସ୍ତେ କାବାକାଠ ହୋଇ ଅନାଇ ରହିଲେ । ପଦ୍ମକୁମାର ସମସ୍ତଙ୍କ ସନ୍ଦେହ ଦୂର୍ କରାଇ କହିଲା—ଅନ୍ୟ କେହି ନୁହେଁ ସେ ବାସିଆ ।

ସମସ୍ତେ ଚିତ୍କାର କରି ଉଠିଲେ— ସେହି ଗହୀର ବାସିଆ ।

ଠିକ୍ ଏତିକିବେଳେ ଚପଳ ହାତଯୋଡ଼ି ଠିଆହୋଇ କହି ଉଠିଲା ବାସିଆ—ହଁ ଆଜ୍ଞା, ମୁଁ ସେହି ବଢ଼ଲୋକ ସାମନ୍ତଙ୍କ ଶ୍ୱଶୁର ବାସିଆ । ଯାଇଥିଲି ଆପଣମାନଙ୍କ ପାଇଁ ଆଣିବାକୁ ଏହି ଅପୂର୍ବ ଛଳଗୁଡ଼ିକ । କାନରୁ ଫିଟାଇ ଗୋଟିଏ ନାକ ଓ ଯୋଡ଼ିଏ କାନ ଥୋଇଦେଲା ସମସ୍ତଙ୍କ ଆଗରେ ।

କାବାକାଠ ହୋଇ ସମସ୍ତେ ଅନାଇଥାନ୍ତି । ବାସିଆ ଟିକିଏ ନକଜଯାଏ ସକଳ କଥା କହି ହସିଉଠିଲା ଅତି ଉକଟ ଭାବେ । ସେ ହସରେ ମାନବିକତା ନ ଥିଲା । କେବଳ ପ୍ରତିହିଂସା ସାଧନର ଆଶ୍ୱସ୍ତ ଭାବ ରହିଥିଲା । ସମସ୍ତେ ତା'ର ସାହସ ଓ ଶକ୍ତିକୁ ଖୁବ୍ ତାରିଫ କଲେ । ପଦ୍ମକୁମାର ଆଖିରୁ ଦି'ଟୋପା ଲୁହ ଗଡ଼ିପଡ଼ିଲା ସମସ୍ତଙ୍କ ଅଲକ୍ଷ୍ୟରେ । ଏକମାତ୍ର ସାରଙ୍ଗ ପଚାରିଦେଲା—ସାମନ୍ତଙ୍କର କିଛି ଅନିଷ୍ଟ କରିନାହଁ ତ ?

ବାସିଆ କହିଲା—ନାହିଁ ହଜୁର ! ମୁଁ ସେଭଳି ଅଖାଡ଼ୁଆ ମଣିଷ ନୁହେଁ । ସାମନ୍ତଙ୍କ ସମସ୍ତଙ୍କର ଶିକାର ହେବାର କଥା । ମୁଁ କାହିଁକି ଏକା ତାଙ୍କର ଅନିଷ୍ଟ କରନ୍ତି ।

ସଭାର ଲୋକମାନେ ଏକାବେଳକେ ଧନ୍ୟ ଧନ୍ୟ କହି ଉଠିଲେ । ବାସିଆର ଅବସ୍ଥା ସେତେବେଳକୁ ସାଙ୍ଘାତିକ ହୋଇ ଆଏ । ଲୋକ ଉପାସରେ ପେଟଯାଇ ପିଠି ଲୁଚିଛି । କଥା କହିବାକୁ ବଳ ପାଉନି । ସମୁଦ୍ର ସଙ୍ଗେ ପ୍ରଚଣ୍ଡ ସଂଗ୍ରାମ କରି ଜାହାଜରେ ଫେରି ଆସିବା ସାଧାରଣ ଲୋକପକ୍ଷେ ସହଜ କଥା ନୁହେଁ । ତେଣୁ ସାରଙ୍ଗ ହାତରେ ତାକୁ ଖାଇବାକୁ ଦିଆଗଲା ।

ତା'ପରେ ଦସ୍ୟୁଦଳ ସଭାରୁ ଦାବୀ କରାଗଲା—ସାମନ୍ତରାୟଙ୍କୁ ଯେଉଁ ଆଦେଶନାମା ଲେଖାଯାଇଛି,' ତାହା ପାଠ କରାଯାଉ । ସାରଙ୍ଗ ପଢ଼ିଲା—

୧—ଶ୍ରୀଯୁକ୍ତ ହରିହର ସାମନ୍ତରାୟ·····ଅବଗତ ହେବ; ତୁମର ସମସ୍ତ ଭୁଲ ବର୍ତ୍ତମାନ ଧରାପଡ଼ି ଯାଇଛି । ତୁମେ ଓଡ଼ିଶାର ଗୋଟିଏ ପ୍ରଚଣ୍ଡ ଜଳଦସ୍ୟୁ । ବୋଇତ ଲୁଟପାଟ କରାଇ କୋଟି କୋଟି ଟଙ୍କାର ମାଲିକ ହୋଇ ବସିଛ । ବହୁ ଲୋକଙ୍କର ସର୍ବନାଶ କରିବା ସଙ୍ଗେ ସଙ୍ଗେ ଅପାର ନରହତ୍ୟା ବି କରିଛ । ନାରୀଧର୍ଷଣ ଏବଂ ନାରୀ ଲୁଣ୍ଠନ କରିବାରେ ତୁମର ମଧ୍ୟ ଯଥେଷ୍ଟ ଖ୍ୟାତି ଅଛି ।

୨ – ଯେଉଁମାନେ ରକ୍ତ ଦାନକରି ମରଣ ସଙ୍ଗେ ଲଢ଼ି ତୁମକୁ ଏ ବିପୁଳ ଧନର ଅଧିକାରୀ କରାଇ ଅଛନ୍ତି, ସେମାନଙ୍କୁ ତୁମେ କିଛି ଦେଇନାହଁ । ଏଣୁ ସେ ଧନ ତୁମ ଦସ୍ୟୁଦଳ ମଧ୍ୟରେ ବଣ୍ଟନ କରାଯିବା ଉଚିତ । ଯାହାହେଉ ସମସ୍ତ ଦୋଷାଦୋଷ ଉତ୍କଳ ମହାରାଜା ସ୍ୱୟଂ ଉପସ୍ଥିତ ହୋଇ ବିଚାର କରିବେ । ତତ୍ପୂର୍ବରୁ ତୁମେ ମୋର ବନ୍ଦୀ । ଏ ଆଦେଶ ନାମା ପାଇବାମାତ୍ରେ କୌଣସି ତର୍ଜନ ଗର୍ଜନ ନ କରି ଶୀଘ୍ର ଆତ୍ମସମର୍ପଣ କରିବ । ଧନାଗାର ଜଗିବା ପାଇଁ କୋଡ଼ିଏ ଜଣ ବଳବାନ୍ ପ୍ରଜା ପଠାଇଲି । ତୁମେ

ଆଜି ସେ ଧନାଗାରରେ ହାତ ଦେଇ ପାରିବ ନାହିଁ । ଶୀଘ୍ର ତୁମ ଦଳର ଆଜ୍ଞା ତାମ୍ବୁରେ ଆସି ମୋତେ ସାକ୍ଷାତ କରିବ । ସ୍ୱତଃ-ପ୍ରବୃତ୍ତ ହୋଇ ନ ଆସିଲେ—ମୋର ପ୍ରଜା, ତୁମରଦସ୍ୟୁ ଭାଇମାନେ ତୁମକୁ ବଳପୂର୍ବକ ବନ୍ଦୀକରି ଆଣିବେ । ଇତି ।

ହୁକୁମ୍

ସ୍ଥାନ—ଦସ୍ୟୁ ତାମ୍ବୁ — ଯୁବରାଜ ପଦ୍ମକୁମାର ଦେବ
ଶନିବାର, ସପ୍ତମୀ — ଓଡ଼ିଶା

ପତ୍ରଟା ଶୁଣି ସାରିବା ପରେ ସଭାସଦମାନେ ଆନନ୍ଦରେ ଆତ୍ମହରା ହୋଇ ଧନ୍ୟ ଧନ୍ୟ କରିବାକୁ ଲାଗିଲେ । ଆନନ୍ଦରେ କୋଳାହଳ ଏତେ ଜୋର୍ ଉଠିଲା ଯେ, ସମ୍ଭାଳିବା ମୁସ୍କିଲ ହୋଇ ପଡ଼ିଲା । ତା'ପରେ ବାଇଶି ଜଣ ଦସ୍ୟୁ ଅନ୍ତେ ବୋଇତରେ ଯାହା ଆଗରୁ ଥିଲେ । ଆଜି ଖଣ୍ଡେ ଖାଲି ବୋଇତ ଘାଟକୁ ପଠାଗଲା, ମହାରାଜା ଆସିଲେ ତାଙ୍କୁ ଘେନି ଆସିବାପାଇଁ ।

ଯଥାସମୟରେ ସାମନ୍ତର ଆଦେଶନାମା ପାଇଲେ । ମନ ତାଙ୍କର ପ୍ରଚଣ୍ଡ ରାଗରେ ପ୍ରଜ୍ୱଳିତ ହୋଇ ଉଠିଲା । ମନ୍ତ୍ରି ସିଂହାସନରୁ ହାତରେ ଖଣ୍ଡା ନେଇ ଡେଇଁ ପଡ଼ିଲେ ଆଦେଶନାମା ନେଇଥିବା ଦସ୍ୟୁ ଉପରକୁ । ଚତୁର ଦସ୍ୟୁ ମଧ୍ୟ ପୂର୍ବରୁ ସାବଧାନ ଥିଲା । ତେଣୁ ଏଭଳି ଗୋଟିଏ ଡେଙ୍କା ବସାଇ ଦେଲା ଯେ, ସାମନ୍ତରାୟ ଛିଟିକି ପଡ଼ିଲେ ପାଞ୍ଚହାତ ଦୂରକୁ ।

ସଙ୍ଗେ ସଙ୍ଗେ ଆଉ ଜଣେ ଦସ୍ୟୁ ଆସି ହାତ ଗୋଡ଼ ତାଙ୍କର ବାନ୍ଧି ପକାଇଲା ଲୁହା ଶିକୁଳିରେ । ତା'ପରେ ଗୁଳିଲେ ବୋଇତକୁ ।

ସାରଙ୍ଗର ବରାଦ ମତେ କୋଡ଼ିଏ ଜଣ ବଳିଷ୍ଠ ଦସ୍ୟୁ ସାମନ୍ତରାୟ ଧନାଗାର ପ୍ରହରୀ ଜଗି ରହିଲେ । ଏ ସମ୍ବାଦ

ଯାଇବା ମାତ୍ରେ ବୈରିଣୀ ଯାଜ୍ଞାର ହୃତ୍‌ପିଣ୍ଡ ବନ୍ଦ ହୋଇଯିବାରୁ ମରଣ ଲଭିକଲା ।

ବନ୍ଦୀ ସାମନ୍ତର୍—ଦସ୍ୟୁ ଟାପୁରେ ଯାଇ ନିଜ ଦଳଦ୍ୱାରା ବହୁତ ଲାଞ୍ଛିତ ହେଲେ । ଏପରି କି ଲଜ୍ଜା ଓ ସଙ୍କୋଚରେ କାହାରି ମୁହଁକୁ ଅନାଇ ପାରିଲେ ନାହିଁ ।

ଯଥା ସମୟରେ ଉତ୍କଳ ମହାରାଜା ଆସି ନ୍ୟାୟ ବିଚାର କଲେ । ସମସ୍ତ କଥାପୁଙ୍ଖାନୁପୁଙ୍ଖ ଭାବେ ଆଲୋଚନା କରାଗଲା । ଅପରାଧୀ ସାମନ୍ତରଙ୍କୁ ହେଲା ଫାଶୀ । ପ୍ରତ୍ୟେକ ଦସ୍ୟୁଙ୍କୁ ନଗଦ ପନ୍ଦର ହଜାରଠାରୁ ପଚାଶ ହଜାର ପର୍ଯ୍ୟନ୍ତ ଟଙ୍କା ଦିଆଗଲା ବ୍ୟବସାୟ କରିବାକୁ । ଆଉ ଏପରି ଘୃଣ୍ୟକର୍ମ କରିବେ ନାହିଁ ବୋଲି ସମସ୍ତେ ଚୁକ୍ତିପତ୍ର ଲେଖିଦେଲେ ।

ସୌଦାଗର ପତ୍ନୀଙ୍କ ଧନରତ୍ନସହ ତାଙ୍କୁ ନେଇ ତାଙ୍କ ଗ୍ରାମରେ ପହଞ୍ଚାଇ ଦିଆଗଲା ।

ଯେଉଁ ବନ୍ଦୀ କେତେଜଣ କାରାଗୃହରୁ ମୁକ୍ତି ଲାଭ କରିଥିଲେ, ସେମାନେ ପାଞ୍ଚଗୋଟି ସୌଦାଗରଙ୍କର ଲୋକ । ସମସ୍ତେ ବି ବଞ୍ଚି ଥିଲେ । ସେମାନଙ୍କ ଅପହୃତ ଧନର ତାଲିକା ମଧ୍ୟରୁ ସେମାନେ ଖୁସିରେ ପ୍ରତ୍ୟାବର୍ତ୍ତନ କଲେ ।

ସାରଙ୍ଗଙ୍କୁ ପୁରସ୍କାର ଦିଆଗଲା ଲକ୍ଷେଟଙ୍କା ଓ ଖଣ୍ଡେ ସୁନା-ପାତିଆ ସନନ୍ଦ । ବାକୀ ସମସ୍ତ ଧନ ଖର୍ଚ୍ଚରେ ଖୋଲାହେଲା ଖଣ୍ଡେ ଦରିଦ୍ର ନିବାସ । ସେ ନିବାସର ପରିଚାଳନାଭାର ରହିଲା ଯୁବରାଜଙ୍କ-ଠାରେ । ହାସିଆ ସାରା ଜୀବନ ରହିଲା ମହାରାଜାଙ୍କ ପାରିଷଦମାନଙ୍କ ମଧ୍ୟରେ ।

ସାମନ୍ତରଙ୍କ ଅନ୍ୟାୟ ଅମାତ, ନରହତ୍ୟା, ଲୁଟପାଟ ଇତ୍ୟାଦି ଲୋକ ଅହିତକର କାର୍ଯ୍ୟରେ ଯବନିକା ଟାଣି ମହାରାଜ ସଦଳବଳେ କଟକ ଫେରିଲେ ।

ଯୁବରାଜଙ୍କ ଜଳଯାତ୍ରା ସଫଳ ହୋଇଥିବାରୁ ରାଜବାଟୀରେ ବଡ଼ଧରଣର ଭୋଜି ହୋଇଗଲା । ହଜାର ହଜାର ଲୋକ ଖାଇଲେ, ବୋହି ନେଲେ—ଜୟଗାନ ଗାଇ ଘରକୁ ଗଲାବେଳେ ଭିତରୁ ଜଣେ ଗାଇ ଗାଇ ଯାଉଥିଲା

ଏହି ଓଡ଼ିଶା ଆମର ଖାର ମାଟିରେ
ବହୁ ତଥ୍ୟ ମିଳେ ପାରିଲେ ଘଣ୍ଟିରେ ।
ଯାର ସନ୍ତାନମାନେ ଆଦର୍ଶ ଗଢ଼ାରେ
ତାଙ୍କ ନାମ ଯୁ କାଳେ କାଳେ ଚଢ଼ାନ୍ତି ।
ଏହି ଜାତିର ମହତ ଶିକ୍ଷାରେ
ଅଛି ଜ୍ୱଳନ୍ତ ଅଗ୍ନି ପରୀକ୍ଷାରେ ।
ଯେବେ ଘୋର ଆସେ ଘୋର ଦୁର୍ଗତି
ତେବେ ନୁହେ ଏ ଜାତି ଦୁଃଖିତ ମତି ।
ଧୈର୍ଯ୍ୟଧର କରଇ ସବୁ କରମ
ଆଗେ ରକ୍ଷିଥାଏ ନିଜ-ଧରମ ।
ନୁହେଁ ଓଡ଼ିଆ ଏ ଅଟେ ବଡ଼ିଆ
ଛଡ଼ା ବୁଦ୍ଧି ଥିବାରୁ ସିନା ଉଡ଼ିଆ ।
ସର୍ବେ ଗାଅ ଓଡ଼ିଶାର ମଙ୍ଗଳ
ଯେଉଁ କୃଷିର ଜୀବିକା ଲଙ୍ଗଳ ।
ସେହି କୃଷିକୁଳ ହେବ ଉନ୍ନତ
ବଢ଼ୁ ଓଡ଼ିଶାର ଧନ ଦୌଲତ ।

ବଗୁଲି କହିଲା—ଏହି ତ ତୋର କାହାଣୀ ?

ବଗ କହିଲା—ପୁରା ଆଧୁନିକ । ବୁଝିଲୁ ନାଁ, ତୋ କଥା-ଗୁଡ଼ାକ ଅସମ୍ଭବ ଧରଣର । ତଥାପି ଶୁଣିବାକୁ ଇଚ୍ଛା ହେଉଛି ।

ବଗୁଲି କହିଲା—କାହାଣୀଗୁଡ଼ାକ ଅସମ୍ଭବ ପ୍ରକାରର ନ ହେଲେ ଭଲ ଲାଗେନା । ତେଣୁ ତୁ ମନଦେଇ ଶୁଣ ।

ମୁଁ ଆଉ ଗୋଟିଏ ମାତ୍ର କହିବ । ତା' ପରେ ଏଠୁ ଉଡ଼ିଯିବା ଚରା ଖୋଜିବାକୁ ।

ବଗ କହିଲା—କହ, ଯେମିତି ଖୁବ୍ ଜମକ ଉଠିବ ।

ବଗୁଲି ଆରମ୍ଭ କଲା—

ଜଆରେ ଜଥା ଶୁଣ ବଗ ମୁନିରୁ ଅଗସ୍ତ୍ୟେ
ଉଗୁଆ ବୁଢ଼ା ମଙ୍କଟି ଧରି ବାନ୍ଧ ପଞ୍ଜରେ ଧାଏଁ ।
ଚଳଚମାସେ ତଇତ ଗ୍ରୀଷ୍ମେ ଉଇଥ ବୋଝ ମୁଣ୍ଡେ
ସଇତା ବୋଉ୍ ଓଯେଇଜୁଣୀ କଚ୍ଛୁ ଦେଇନ ଭୁଣ୍ଡେ ।
ଅଜଲ୍ ଝଲି ମାଇଲା ମୁଷା ଧାଇଁଲା ଦାଣ୍ଡେ ଦାଣ୍ଡେ
କାଇଲା ଢୋଲ ଶବଘ ଚୋକା ସୁଝ ଗ୍ରାଇଲା କାଣ୍ଡେ ।
ମଣିଷଖିଆ ଗଛଗୁଡ଼ାକ ମୋଡ଼ ମୋଡ଼କା ଡାଳ
ଯୋଡ଼ଏ ଥୋଡ଼ ବଲଦଙ୍କର ଦେଲା ପୁରଇ କାଳ ।
ତେଲୁଣୀ ଯୋଳ କୁଆଁକୁ ସୁହଁ । ଗ୍ଲାନ୍ତ ମନ୍ଦା ମନ୍ଦା
କେଲୁଣୀ ବୁଢ଼ୀ ଖାଇଲା ଖଜ ଝୁଣ୍ଟଚୋବେଇ ଜନ୍ଦା ।
ଦେଉଳରେ ଢ଼ଆ ମଡ଼ିଆ ଭୂତ ଗଡ଼ଆକୁଳେ ବସି
ମେଡ଼ ମେଡ଼ିଆ କହୁଛୁ କେତେ ବଡ଼ିଆ କଥା ହସି ।
ଶୁଣିବୁ ଯେବେ ବୁଲଆ ରାଣୀ କହିବ ମନ ଜାଣି
ସୁର ସୁନ୍ଦରୀ କାହାଣୀ ତୋତେ କହିବ ଗନ୍ଧା ଟାଣି ।

ବଗ କହିଲା—କହ, କହ ! ମୁଁ ତ ବସିଛୁ ଶୁଣିବାକୁ ।

## ସୁର ସୁନ୍ଦରୀ କାହାଣୀ

ବଗୁଲି ଆରମ୍ଭ କଲା—

ଲୁଚା ନଁ । ଗୋକାରାମ ରାଣୀ ତାର କାଣୀ
ମନ୍ତ୍ରୀ ହୋଇଛୁ ସନ୍ତ୍ରୀ ବୁଢା ନାହିଁ ତାର ଠାଣି ।
ଶୁଆସ ଚଡ଼ି ଦୁଆସ ଚୋକା ଡାକିଲା ଘରେ ଘରେ
ଶୁଣିଲେ ନାହିଁ ଗୋଟିଏ କେହି ବାଘା ଅସୁର ଡରେ ।

ରାଜା ଗୋଳାରାମ ଗୋଟିଏ ଅସୁର ପୋଷି ଥାଆନ୍ତି ଯେ ତା ନାଁ ହେଉଛି ବାଘା । ପ୍ରତିଦିନ ସେ ଗୋଟିଏ ପାଞ୍ଚବର୍ଷିଆ ଝିଅ ଖାଇବାକୁ ନଏ । ସେ ମୋଟେ ବାରଦିନ ହେଲା ଆସି ତାଙ୍କ ରାଜ୍ୟରେ ରହୁଅଛି । ପ୍ରଥମଦିନ ରାଜା ତା କଥା ଅନୁସାରେ କାମ ନ କରିବାରୁ ଅସୁର ରାଗରେ ଯାଇ ରାଣୀଙ୍କ ଆଖି ଫୁଟାଇଦେଲା । ଏ କଥା ଦେଖି ରାଜା ଭୟରେ ପ୍ରତିଦିନ ଝିଅପିଲା ଯୋଗାଇବାକୁ ରାଜିହେଲା ।

ସେହିଦିନଠୁଁ ବାଘା ଅସୁର ରାଜଗଡ ବାହାରେ ଯାଇ ଗୋଟିଏ ପଥର ଘରେ ରହିଲା । ଦିନଯାକ ଶୋଇ ଘୁଙ୍ଗୁଡ଼ି ମାରୁଥାଏ । ରାତି-ହେଲେ ଆସି ଗୋଟାଏ ଝଙ୍କାଳିଆ ବରଗଛରେ ବସେ । ରାଜା ଏଣେ ରାଜ୍ୟରେ ପାଳି କରିଥାଆନ୍ତି । ଯାହାଘରେ ପାଞ୍ଚବରଷର ଝିଅପିଲା ଥାଏ, ଦୁଆରୀ ଲୋକ ଯାଇ ତାକୁ ଶଗୁଆସ୍ତରେ ବସାଇ ନେଇ ଆସେ । ରାତିଅଧ ବେଳକୁ ହାତ ଭୁଣ ଖୁରନଖ ଓ କୁନ୍ଦୁମୁଣ୍ଡ ଝିଅଟିକୁ ନେଇ ରଜାଘର ଲୋକମାନେ ସେ ଗଛତଳେ ରଖି ଦେଇ ଆସନ୍ତି । ଅସୁର ଖାଇପିଇ ଗଛମୂଳେ ହାଣ୍ଡି ଧାକ କରୁଡ଼ିଦେଇ ଚାଲିଯାଏ ଶୋଇବାକୁ ।

ବାରଦିନରେ ବାରଘରୁ ଏଗାରଟି ଝିଅ ଗଲାପରେ ଲୋକ-ମାନଙ୍କ ଭିତରେ ଆତଙ୍କ ସୃଷ୍ଟି ହେଲା । ଅନ୍ୟମାନେ ଆଉ ଝିଅ ଦେବାକୁ ରାଜି ପଡ଼ିଲେନ । ସମସ୍ତେ କହିଲେ—ବରଂ ସମସ୍ତେ ମରିବା ମାଝ ଛେଉଁ ପିଲାଗୁଡ଼ାକ କେବେହେଲେ ଅସୁର ପେଟରେ ପଶିବାକୁ ଦେବାନି । ଏକଥା ଶୁଣି ରାଜା ଭାରି ଅଡୁଆରେ ପଡ଼ିଲେ । କ'ଣ କରିବେ ।

ଏଣୁ ମାଇଲେ ବ୍ରହ୍ମହତ୍ୟା
ତେଣୁ ମାଇଲେ ଗୋରୁହତ୍ୟା ।

ରଜା ଏ'ପ୍ରକାର ଅସୁବିଧାରେ ପଡ଼ି ହତାଶ ହୋଇପଡ଼ିଲେ । ଦୁଆର ଝୋଟିଆ ଘର ଘର ବୁଲି ବୁଲି ନଗରରେ ଭୁଲେଇଛିଲ । ତେଣେ ଅସୁର ଖାଇବାକୁ ନପାଇ ଗର୍ଜନଗର୍ଜରରେ ନଗର ଫଟାଉଥାଏ । କିଛି ଉପାୟ ନ ଦେଖି ରାଜା, ରାଣୀ, ପାତ୍ର, ମନ୍ତ୍ରୀ ଓ ପ୍ରଜା ଲୋକମାନେ ଘରଦ୍ୱାର ଛାଡ଼ି ଲାଗିଲେ ପଳାଇବାକୁ ।

ଘଟଣା ଅନୁମାନକରି ଅସୁର୍ ପଛେ ପଛେ ଗୋଡ଼ାଇଲା । ଏହିପରି ଗୋଡ଼ଆଗୋଡ଼ି ହୋଇ ସେମାନେ ଯାଇ ପହଞ୍ଚିଲେ ଆଉ ଗୋଟିଏ ରାଜ୍ୟରେ । ସେତେବେଳକୁ ରାତି ପାହି ଯାଇଥିଲା ।

ନଗ୍ରଣିଆ ନଦୀ ଘାଟରେ ଝିଅଟିଏ ଗାଧୋଉଥାଏ । ହଠାତ୍ ଧଇଁସଇଁ ହୋଇ ପଳାଇ ଯାଉଥିବା ଲୋକମାନଙ୍କୁ ଦେଖି ପଚାରିଲା କଥା କ'ଣ ?

ଏମାନେ ଅସୁରର ସମସ୍ତ କଥା ଗୋଟି ଗୋଟି କରି ଜଣାଇଲେ । ଝିଅଟି କହିଲା—ତୁମେମାନେ କେହି ଭୟ କରନା, ବାନ୍ଧଧରି ଏଇଠି ଠିଆହୁଅ । ମୁଁ ଆଗେ ଅସୁରଟାକୁ ଅଟକାଇଦିଏ, ତା'ପରେ ତୁମ କଥା ବୁଝିବି । ଏହା କହି ଡାହାଣ ହାତଟା ଉପରକୁ ଟେକି ତଳଆଡ଼କୁ ହଲାଇ ଦେଲା ।

ଅସୁର ହଠାତ୍ ଅଚଳ ଏକାଥରକେ ଗ୍ରମ୍ଭ । ଯୁଆଡ଼କୁ ବଳୁଛି, ସିଆଡ଼େ ଦେଖେ ଆଗରେ ତା'ର କାଚବାଡ଼ ଲାଗିଛି । ରାଗରେ କାଚବାଡ଼ ଭାଙ୍ଗିବାକୁ ଯେତେ ଚେଷ୍ଟାକଲା ମୋଟେ ପାରିଲାନି । ପାଖରେ ଥାଏ, ହାତ ବଢ଼ାଇଲେ ଦୂରକୁ ଯୁଞ୍ଜେ । ଏମିତ ଏମିତ ହୋଇ ହଠାତ୍ ଥକିପଡ଼ିଲା ।

ଏଣେ ଝିଅଟି ସମସ୍ତଙ୍କୁ କହିଲା—ତୁମେମାନେ ଏ ନଈ ପାଣିରେ ପଶ । ଏବେ ବଡ଼ଇଚ୍ଛା ବଡ଼ଇଚ୍ଛା ହଇରାଣ ହେବ କାହିଁକି । ମୁଁ ଅଳ୍ପ ସମୟରେ ତୁମକୁ ଗୋଟିଏ ନଗରୀ ଯାଗାକୁ ପଠାଇ

ଦେବ । ଖୁବ୍ ଖୁସିରେ ରହିବ । ଅସୁର ଛାଡ଼ ମନ୍ଦ୍ରା ଅସୁର ଆସିଲେ ବ ତୁମର କିଛି କରି ପାରିବନି ।

ତା କଥାରେ ବିଶ୍ୱାସ କରି ସମସ୍ତେ କନାଗଣ୍ଠିଏ ପାଣିରେ ପଶିଲେ ମାତେ ସେ ତିନି ଆଞ୍ଜୁଳା ପାଣି ମନ୍ତ୍ରଣ କରି ସମସ୍ତଙ୍କ ଦେହରେ ସିଞ୍ଚିଦେଲା ।

ଏତିକିରେ ସମସ୍ତେ ଅଦୃଶ୍ୟ ହୋଇଗଲେ ।

ତେଣେ ଅସୁର ବଡ଼ଗସ୍ତ ଆକ୍ରାନ୍ତ ହୋଇ ନିଜ ମାଲିକଙ୍କୁ ସ୍ମରଣ କଲା । ମାଲିକ ତା'ର ଗୋଟିଏ ଯାଦୁକାରୀ ରାକ୍ଷସୀ । ଘରେ ବସି ସକଳ କଥା ଜାଣିପାରେ ସେ । ତେଣୁ ବାଘା ଅସୁର ସ୍ମରଣ କଲାମାତେ ଜାଣିପାରି ପଠାଇ ଦେଲା ଯୋଡ଼ାଏ ଲୁହାସାବଳ । ସେ ଆସି ପିଟାପିଟି କରି କାଚ କାଢ଼ସବୁ ଭାଙ୍ଗିଦେଲା । ମାତ୍ର ମଣିଷ-ଗୁଡ଼ାକ ଯେ କାହାନ୍ତି ।

ଅସୁର ପରସ୍ତେ ଦଉଡ଼ା ଦଉଡ଼ି କରି ଖୁବ୍ ଖୋଜିଲା । କାହାକୁ ନ ପାଇବାରୁ ନିରାଶ ହୋଇ ବସିଲା ଗୋଟିଏ ଗଛମୂଳେ ।

ଗାଧୋଉଥିବା ଝିଅଟି ମୁରକିହସା ଦେଇ ଧୀରେ ଧୀରେ ଚାଲିଗଲା ଆପଣା ଘରକୁ ।

ମହେନ୍ଦ୍ର ନଗର ବୋଲି ଗୋଟିଏ ରାଜ୍ୟ । ସେ ରାଜ୍ୟର ରାଜା ମନୋହର ପ୍ରସାଦ ଦେବ । ତାଙ୍କ ରାଣୀ ଶୋଭାବତୀ ଦେବୀ ଘୋର ଶିବଭକ୍ତ । କାଳ କାଳ ଧରି ଶିବପୂଜା ଫଳରେ ଯୋଉ ପୁଅଟି ପାଇଥାନ୍ତି, ତା ନାଁ ହେଉଛି ସରସିଜ କୁମାର ।

ଶିବଙ୍କ ଦୟାରୁ ତା ମୁଣ୍ଡରେ ଗୋଟିଏ ମଣି ଅଛି । ସେ ମଣି ପ୍ରସାଦରେ ସେ ମଲା ଲୋକକୁ ବଞ୍ଚାଇ ଦେଇ ପାରିବ । ଆକାଶରେ ଉଡ଼ିପାରି, ସମୁଦ୍ରରେ ବୁଡ଼ି ପାରିବ । ନିଆଁ ଭିତରେ ପଶିଲେ ବି ପୋଡ଼ିଯିବ ନାହିଁ । ଏଣୁ ରାଜା ରାଣୀଙ୍କ ମନ ଭରି ଆନନ୍ଦ ।

ପୃଥିବୀକୁ ଆସି ଷୋଳବର୍ଷ ହେଲାଣି । ପାଠଶାଠପଢ଼ି ଜଗତଜିତା ଉପାଧି ପାଇଥାଏ । ଯୁଦ୍ଧବିଦ୍ୟା ଶିଖୁଥାଏ । ତା'ର ଏଭଳି ତୀକ୍ଷ୍ଣ ବୁଦ୍ଧି ଯେ ଯେଉଁ କାମରେ ହାତଦିଏ, ସେ କାମଟା ଖୁବ୍ ଚଞ୍ଚଳ ହୋଇଯାଏ । ଏଣୁ ତାକୁ ରାଜ୍ୟର ଲୋକମାନେ ବି ଧନ୍ୟ ଧନ୍ୟ କରୁଥାନ୍ତି ।

ବହୁଦିନ ପୂର୍ବେ ଗୋଟିଏ ଅସୁର ଆସି ମନୋହରପ୍ରସାଦ ଦେବଙ୍କ ରାଜ୍ୟରେ ବହୁତ ଉତ୍ପାତ କରୁଥିବାରୁ ସେ ତାକୁ ବଡ଼ କଷ୍ଟରେ ପୋଡ଼ି ପକାଇଥିଲେ । ଅସୁରର ଆଉ କେହି ନ ଥାନ୍ତି । ଏକମାତ୍ର ଥାଏ ଗୋଟିଏ ଝିଅ । ସେ ଝିଅର ନା କାମସେଣା ।

ବାପର ମୃତ୍ୟୁ ଖବର ପାଇ କାମସେଣା ଭାରି ବ୍ୟସ୍ତ ହେଲା । କପରି ଏ ରାଜାଙ୍କର ସର୍ବନାଶ କରିବ, ଏଥିପାଇଁ ମହା ଯାଦୁବୃକ୍ଷ ବୃକ୍ଷକୁ ପୂଜାକରି ଶିଖିଗଲା ବହୁତ ଯାଦୁ । ମାତ୍ର ଏଥିରେ ବା ରାଜାଙ୍କର କ'ଣ ହେବ ।

ଏ କଥା ଯେତେବେଳେ ତା ମୁଣ୍ଡରେ ପଶେ, ସେତେବେଳେ ପୁଣି ପୂଜା ଆରମ୍ଭ କଲା । ଯାଦୁବୃକ୍ଷ ଦେଖାଦେଇ କହିଲେ —ଦେଖ, ତୁ ଯଦି ଶଏ ଆଠଟି ନିଖୁଣ ବାଳିକା ପାଞ୍ଚବର୍ଷରୁ ସାତବର୍ଷ ଯାଏ ବୟସ ହୋଇଥିବ, ସେମାନଙ୍କୁ ଆଣି ମଧୁ କୁଣ୍ଡ ପାଖରେ ବଳିଦେବୁ, ତେବେ ମଧୁକର ଗନ୍ଧର୍ବ ପ୍ରସନ୍ନ ହୋଇ ତୋତେ ଦେବେ ଗୋଟିଏ ସୁବର୍ଣ୍ଣର ଝଣ୍ଡା । ସେହି ଝଣ୍ଡା ଟୋଟିକ ତୋ ହାତରେ ପଡ଼ିଲେ ଯାଇ ଯେଉଁ କଥା ।

ଏ କଥା ଶୁଣି କାମସେଣା ମାତି ଉଠିଲା ଖୁବ୍ ଯୋର୍ ରେ । ଜାତିଭାଇମାନଙ୍କୁ ଡକାଇ ଗୋଟିଏ ସଭା କଲା । ଖୁବ୍ ବଳବାନ୍ ଅସୁର ନଅଜଣ ନିଯୁକ୍ତ ହେଲେ ଝିଅ ଆଣିବାକୁ । ଏମାନଙ୍କ ମଧ୍ୟରୁ ବାଘା ଅସୁର ଗୋଟିଏ । ସମସ୍ତେ ବାରଟି ଲେଖାଁ ଝିଅ ଆଣି ଦେଲେ । ବାଘାର ଗୋଟିଏ କମ୍ ହେଲା ।

ହେଲେବ କାମସେଣା ତା କାର୍ଯ୍ୟ ବନ୍ଦକଲ ନାହିଁ । ଶହେ ସାତଟି ବାଳକା ନେଇ ପହଞ୍ଚିଲ ମଧୁକୁଣ୍ଡ ପାଖରେ । ବଳିଦେବା ପାଇଁ ସମସ୍ତ ଯୋଗାଡ଼ କଲାଣି । ଏତିକିବେଳେ ଆସି ମଧୁକର ଗନ୍ଧର୍ବର ଜଣେ ସେବକ ପହଞ୍ଚି କହିଲା—ଆଗେ କସ୍ତୁରୀ ମୃଗ ପାଖରୁ କସ୍ତୁରୀ ଓ କାମଧେନୁଗାଈଠୁ କ୍ଷୀର ନ ଆଣି ବଳିଦେବୁ କିପରି ?

କାମସେଣା ପୁଣି ଏକ ଅଡୁଆରେ ପଡ଼ିଲା । କସ୍ତୁରୀ ମୃଗ ଓ କାମଧେନୁଗାଈ କୋଉ ଜଙ୍ଗଲରେ ମିଳିବେ । ଜାଣିବ ବା ତାଙ୍କଠୁ ଏ ଯୋଡ଼ିକ ପଦାର୍ଥ ଆସିବ, ଏଥିପାଇଁ ହେଲା ତା'ର ଘୋର ଚିନ୍ତା । ବଳି ଦେବା କଥା ବନ୍ଦ ରହିଲା । ଶହେ ସାତଟି ଝିଅଙ୍କୁ ଅନୁଚରମାନେ ଖୁବ୍ ସାବଧାନରେ ନେଇଗଲେ ।

କାମସେଣା ବାହାରିଲା କସ୍ତୁରୀ ମୃଗ ସନ୍ଧାନରେ । ମଧୁକୁଣ୍ଡଠାରୁ କାମସେଣା ଗଡ଼ ସାତକୋଶ ବାଟ । ଘୋର ଜଙ୍ଗଲ ମଝିରେ ପର୍ବତ କାଟାହୋଇ ଅସୁର କାରିଗରମାନଙ୍କ ବୁଦ୍ଧିରେ ତିଆରି ହୋଇଛି ଖୁବ୍ ନିପୁଣ ଭାବେ । ଗଡ଼ଦୁଆରେ ବଜ୍ରକବାଟି ଲାଗିଥାଏ । ଏଭଳି ଦୁର୍ଭେଦ୍ୟ ଯେ ମାଛିଟିଏ ମଧ୍ୟ ଗଳିପାରିବା କଷ୍ଟ । ବନ୍ଦୀ ଝିଅମାନେ ରହିବାପାଇଁ ପ୍ରକାଣ୍ଡ କାରାଗାର । ହେଲେ ବଡ଼ ହିପାଜତରେ ରଖା-ଯାଇଥାଏ । ଖାଇବା, ପିଇବା, ଶୋଇବା, ଖେଳ କୌତୁକ କରିବା ପାଇଁ ସୁବିଧାର ଅଭାବ ନାହିଁ । ତାଙ୍କ ଆଗରେ ଯେ ମୃତ୍ୟୁ ଆସି ନର୍ତ୍ତନ କରୁଛି ଏକଥା ସେ ବା କ'ଣ ଜାଣିବେ !

ଅସୁରମାନେ ଝିଅ ଦଳଟାକୁ ନେଇ ଗଡ଼ ପାଖରେ ପହଞ୍ଚି-ଗଲେ । ସେତେବେଳକୁ ବଜ୍ରକବାଟି ପାଖରେ କୁଆଡ଼ୁ ଆସି ଗୋଟିଏ ସୁନ୍ଦର ଯୁବକ ବସିଥାଏ । ତା ମୁଣ୍ଡ ଉପରେ ଫୁଟିଥାଏ ଗୋଟିଏ ସୁନାର ପଦ୍ମ । ପାଖୁଡ଼ାମାନଙ୍କରେ ଖେଳବୁଲ

କରୁଥିବା ଭଅଁରଗୁଡ଼ିକ ଇନ୍ଦ୍ର ନୀଳମଣି ପରି ଚକ୍ ଚକ୍ କରୁଥାନ୍ତି ।
ସୁବର୍ଣ୍ଣ ଖଣ୍ଡେ ଚାନ୍ଦପରି ଯୋଥି ପଡ଼ିବାରେ ଲାଗିଥାଏ ।

ଅସୁରମାନେ ତାଙ୍କୁ ଦେଖି ଚମକି ପଡ଼ିଲେ । ପଚାରିଲେ—ତୁ କିଏ ?

ସୁବର୍ଣ୍ଣ ଖୁବ୍ ଯୋରରେ ହସି ଉଠିଲା । ସେ ହସର ଫୁଆରାରେ ଗୁଡ଼ାଏ ମୁକ୍ତା ଝଡ଼ିପଡ଼ିଲା । ଅସୁରଗୁଡ଼ାକ ଆକାବାକା ହୋଇ ଟିକିଏ ଅନାଇଲେ । ତା ପରେ ଯାଇ ସୋରିଷ ଖୁଣ୍ଟିଲାପରି ଯାଇ ମୁକ୍ତାଗୁଡ଼ିକ ଖୁଣ୍ଟିବାରେ ଲାଗି ପଡ଼ିଲେ । ଏ କଥା ଦେଖି ସୁବର୍ଣ୍ଣ ପୁଣି ଥରେ ହସିଦେଲା ।

ମୁକ୍ତାଗୁଡ଼ିକ ଏଥର ସାପ ହୋଇଗଲେ ଓ ଗୁଡ଼େଇ ଭୁଡ଼େଇ ଅସୁରଗୁଡ଼ାଙ୍କୁ ଚୋଟ ମାରିବାରେ ଲାଗିଲେ । କିଏ କହିବ କି ଜମଣା ପଶିଲାଭଳି ଲାଗିଲା ହୁଲସ୍ଥୁଲ କାରଖାନା । କୋପାନ୍ତେ ମାଆଗ୍ରେ ହୋଇ ଅସୁରପଲ ଏଣେତେଣେ ଦଉଡ଼ିବାକୁ ଲାଗିଲେ ।

ସୁବର୍ଣ୍ଣାକୁ ସୁବର୍ଣ୍ଣ ସୁଯୋଗ ଯୁଟିଗଲା । ତେଣୁ ସେ ହଠାତ୍ ମୁଠାଏ ମୁଠାଏ କରି ଦୁଇମୁଠା ଧୂଳି ମନ୍ତ୍ରକରି ବାଳିକାମାନଙ୍କ ଉପରକୁ ଫିଙ୍ଗିଦେଲା ।

ଦେଖୁ ଦେଖୁ କ୍ଷଣକେ ସାତଟିଯାକ ବାଳିକା ଅନ୍ତର୍ଦ୍ଧାନ ହୋଇ ଗଲେ । ଅସୁରଯାକ ସାପ ଚୋଟରେ ଛଟପଟ ହୋଇ ଗର୍ଜ୍ଜନ କରୁଥାନ୍ତି । ସୁବର୍ଣ୍ଣ ଆଉ ଗୋଟିଏ ଅଟ୍ଟହାସ୍ୟ କରି ଧୀରେ ଧୀରେ ଚାଲିଗଲା ଆପଣା ଘରକୁ ।

ସୁବର୍ଣ୍ଣ ଗଲାପରେ ସାପଗୁଡ଼ାକ ଉଭାନ ହୋଇଗଲେ । ମୁକ୍ତାଗୁଡ଼ିକ ମଧ୍ୟ ଉଭାନ ହୋଇଗଲା । ଅସୁରଯାକ ଟିକିଏ ଦମପାଇ ବାଳିକାମାନଙ୍କୁ ଖୋଜି କାଉଳା ହୋଇ ଉଠିଲେ । ଝାଡ଼ଜଙ୍ଗଲ, ନଈନାଳ, ଝରଣା ଖେଦିଲେ; ମାତ୍ର ଆଉ କାହିଁ ?

ଚଢ଼ଆ ଯେ ଉଡ଼ଯାଇଛୁ । ଶେଷକୁ ହତାଶ ହୋଇ ମୁଣ୍ଡରେ ହାତଦେଇ ବସିଲେ । ଅପେକ୍ଷା ରହିଲା କାମସେଣାଠାରେ ।

କାମସେଣ ତେଣେ ବଣପର୍ବତ ବୁଲି କସ୍ତୁରୀ ମୃଗ ଓ ସ୍ୱର୍ଣ୍ଣମରୀ ଗାଈ ଖୋଜିବାରେ ବ୍ୟସ୍ତ । ମନର ଗତି ମୋଟେ ଠିକ୍ ରହୁ ନ ଥାଏ । କେଉଁଠାରେ ମିଳିବ ବୋଲି ସେ ଖାଲି ଉତ୍ସାହି ହୋଇ ଖୋଜୁଥାଏ । ଏମିତିବେଳେ ଦେଖା ହେଲେ ଜଣେ ବଣିକାଳଙ୍କ ସାଧୁ ।

କାମସେଣା ତାଙ୍କୁ ବହୁତ ବିନୟ ହୋଇ ପଚାରିଲା । ସେ କହିଲେ—ଅଷ୍ଟନ୍ଦ ବୋଲି ଗୋଟିଏ ଝରଣା ଅଛି ହିମାଳୟ ପର୍ବତ ତଳେ । ସେଇଠିକି ଗଲେ କସ୍ତୁରୀ ମୃଗ ମିଳିବ । ତାମରୀ ଗାଈ ବି ମିଳିବ ।

ଏ କଥା ଶୁଣି କାମସେଣା ଛୁଟିବାକୁ ଲାଗିଲା । ଯେ ପର୍ଯ୍ୟନ୍ତ ତା'ର ଲକ୍ଷ୍ୟ ସାଧନ ନ ହୋଇଛି, ସେ ପର୍ଯ୍ୟନ୍ତ ତା'ର ବିଶ୍ରାମ କରିବାକୁ ବେଳ ବି ନାହିଁ । ଏହିପରି ଏକ କଠିନ ପଣ କରି ଲାଗି ପଡ଼ିଥାଏ କାମରେ । ବହୁତ ବାଟ ଅତିକ୍ରମ କରି ଅଷ୍ଟନ୍ଦ ଝରଣା ପାଖରେ ପହଞ୍ଚିଲା ।

ଝରଣାକୂଳେ ଗୋଟିଏ ଶଙ୍ଖ ମଲମଲ ପଥରର ବଢ଼ିଆ ଦେଉଳ । ତା ଭିତରେ ଅଷ୍ଟନ୍ଦେଶ୍ୱର ଶିବଙ୍କର ବିରାଟ ମୂର୍ତ୍ତି ବିଜେ ହୋଇଛନ୍ତି । ଜଟା ଭିତରୁ କୁଳୁକୁଳୁ ଶବ୍ଦରେ ଝରଣା ବହୁଥାଏ । ସେହି ଝରଣା ସିଙ୍ଗରେ ଫୁଲ, ବେଲପତ୍ର, ଲହୁଣୀ, ନବାତ ଫେଣ ଇତ୍ୟାଦି ନାନାପ୍ରକାର ପ୍ରସାଦଜ ଦ୍ରବ୍ୟ ଆସି ଗୋଟିଏ ପଥର କୁଣ୍ଡରେ ପଶୁଥାଏ । ସେହିସବୁ ପଦାର୍ଥ ଖାଇବାପାଇଁ ଆସିଥାନ୍ତି କସ୍ତୁରୀ ମୃଗ ଓ ସ୍ୱର୍ଣ୍ଣମରୀ ଗାଈ ଅନେକ ।

କାମସେଣାର ମୁହଁ ଉଜ୍ଜ୍ୱଳ ହୋଇ ଉଠିଲା । ଭାବିଲା— ପିଚୁଳା ମାନଙ୍କେ ଏଥିରୁ ଦୁଇଟା ମାରିଦେଇ ନେଇ ପଳାଇବ । ଠିକଣା ସ୍ଥାନରେ ପହଞ୍ଚିଲେ କସ୍ତୁରୀ କାଢ଼ି ନିବ, ଚମଁର ନିବ ବାନ୍ଧିବ ।

ହଠାତ୍ ଆଗରେ ତା'ର ଠିଆହୋଇଲା ଆସି ଗୋଟିଏ ମାଙ୍କଡ଼ । କହିଲା—ଆରେ ଅସୁରୁଣୀ, ଏ ଶିବକ୍ଷେତ୍ରରେ ଜୀବହତ୍ୟା କରି ଚିପେଦେଲେ ଆଗେଇ ପାରିବୁନି ! ଗୁଡିଟା ଠୋ କରି ଫାଟିଯିବ । ତୋର ଯେବେ କସ୍ତୁରୀ, ଚ୍ମମରୀ ଗାଈ କ୍ଷୀର ଦରକାର, ତେବେ ମୃଗ ଓ ଗାଈଙ୍କୁ ପ୍ରାର୍ଥନା କର ।

ଏତିକି କହି ମାଙ୍କଡ଼ଟି ଅଦୃଶ୍ୟ ହୋଇଗଲା । କାମସେଣା ଆଉ କରେ କ'ଣ ? ଶେଷକୁ ତା'ର ପରାମର୍ଶ ଅନୁସାରେ ପ୍ରଥମେ ଯାଇ କସ୍ତୁରୀ ମୃଗ ପାଖରେ ପହଞ୍ଚିଲା । ନମସ୍କାରଟିଏ ପକାଇବାରୁ ସେ ପଚାରିଲା—କ'ଣ ଦର୍କାର ?

ମହିଲା—କସ୍ତୁରୀ ଖଣ୍ଡେ ପାଇଁ ଆସିଛି ।

ମୃଗ ପାକୁଳୀ କରି ଦେଖୁ ଦେଖୁ ଖଣ୍ଡେ କସ୍ତୁରୀ ବାହାରିଗଲା । କାମସେଣା ତାକୁ ଧୂଆଧୋଇ କରି କାନରେ ବାନ୍ଧି ଗଲା ଚ୍ମମରୀ ଗାଈ ପାଖକୁ ।

ମୁଣ୍ଡିଆଟିଏ ପକାଇଲାରୁ ଗାଈ ପଚାରିଲା-କଣ ଲୋଡ଼ ?

କାମସେଣା କହିଲା—କିଛି କ୍ଷୀରଦେଲେ ମୁଁ ଦେବକାର୍ଯ୍ୟରେ ଲଗାଇବ ।

ଗାଈ କହିଲା—ସେ କଥା ମୋତେ ଜଣାଅଛି । ମାତ୍ର ଉପାୟ କ'ଣ ! ତୁ ଯେଉଁ କାମ କରିବାକୁ ଏତେ ଯୋଗାଡ଼ କରିଥିଲୁ, ସେସବୁ ପାଣି ଫାଟିଗଲାଣି । ମିଛଟାରେ ଚ୍ମମର ଓ କସ୍ତୁରୀ ନେବୁ କାହିଁକି ?

କାମସେଣା ଚମକ ଉଠିଲା, ସତେ ଯେମିତ ତା ବଦ ମୁଣ୍ଡରେ କିଏ ଜଳନ୍ତା ନିଆଁ ଅଜାଡ଼ି ଦିଏ ସେହିପର ଲାଗିଲା ତାକୁ । ପରେ ପୁଣି ମନଦଣ୍ଡ କର ପଚାରିଲେ—କ'ଣ ହୋଇଛି ?

ଗାଈ କହିଲା—ଏତେ ପରିଶ୍ରମ କରି ଯେଉଁ ଶହେ ସାତଟି ଝିଅ ଆଣିଥିଲୁ ବଳି ଦେବାପାଇଁ, ତାଙ୍କୁ ସୁନ୍ଦସୁନ୍ଦରୀ ଉଡ଼ାଇ ନେଲା । ତୋ ଅନୁଚରଯାକ ସାପ ହୋଇ ଛଟପଟ ହୋଇ ଗଡ଼ ଖାଲରେ ଗଡ଼ୁଛନ୍ତି । ଯା' ଆଗେ ସେମାନଙ୍କୁ ଭଲକର । ପରେ ଯାଇ ଅନ୍ୟାନ୍ୟ କଥା କରିବୁ ।

ପଚାରିଲା—ସୁନ୍ଦସୁନ୍ଦରୀ କିଏ ?

କହିଲା—ଆଲୋ, ଗୋଟାଏ ସାଧାରଣ ଗାଉଁଲି ଝିଅ ସେ । ହେଲେ କ'ଣ ହେଲା, ଭାରି ବୁଦ୍ଧିମନ୍ତ । ଅଲେଖ ନିରଞ୍ଜନଙ୍କୁ ସେବା କରି ମନ୍ତ୍ର, ଯନ୍ତ୍ର ଓ ପବନ ସିଦ୍ଧି କରି ନେଇଛି । ତାକୁ କ'ଣ ତୁ ବନେଇ ପିବୁ ?

ପଚାରିଲା—ତା'ର ମୋ ସାଙ୍ଗରେ ଏତେ ହିଂସା କାହିଁକି ?

କହିଲା—ସେ କଥା ମୁଁ କେମିତି ଜାଣିବି । ସେ ଜାଣେ କି ତୁ ଜାଣୁ, ନୋହିଲେ ନାହିଁ ଜୁମଦଣ୍ଡିଙ୍କ ମଝିରେ ଥିବାଲୋକ ଜାଣେ ।

ପଚାରିଲା—ତେବେ ବର୍ତ୍ତମାନ ମୁଁ କ'ଣ କରିବି ?

କହିଲା—କସୁରୀ ତ ପାଇଛୁ । ପୁଣି ଯେତେବେଳେ ଜୁମର ଦରକାର ପଡ଼ିବ, ଏତେବାଟ ଆସିବୁନି । ଯୋଉ ଯାଗାରେ ଥିବୁ, ସେହି ଜାଗାରେ ମୁଣ୍ଡ ଲାଟିଏ କାଟି ତା ଉପରେ ଠିଆ ହୋଇ କହିବୁ—

ଜୁମରୀ ମାତା କରୁଣା କର
ଆସୁ ମୋ ପାଖକୁ ଝୀର ଜୁମର ।

ପଚାରିଲେ—ଏତକ କହିବା ପରେ ପାଇ ପାରିବ ତ ?

କହିଲା—ନଷ୍ଟସ୍ୟ ପାଇବୁ ।

ଏତକ ଶୁଣି କାମସେଣା ବଜ୍ରାଳ ବେଗରେ ଉଡ଼ିବାକୁ ଲାଗିଲା । ସୁରସୁନ୍ଦରୀ ଗୋଟିଏ କଏ ? ସେ କାହିଁକି ମୋ କାମରେ ବାଧା ଦେବାପାଇଁ ଧାଇଁଛି । ଏହି କଥା ଭାବ ଭାବ ମୁଣ୍ଡ ତା'ର ଗୋଳମାଳ ହୋଇ ଉଠୁଥାଏ । ହେଲେ ପୁଣି ଭାବୁଥାଏ—ଘୁର ମାଙ୍କଡ଼ୀ ପିଲାଟା । ମୋ ପାଖରୁ କ'ଣ ବଳାଇ ଯିବ । କଥାଟା ଜାଣି ପାରିଲଣି ଯେତେବେଳେ କେତେବେଳେ କୌଶଳେ ତାକୁ ନଷ୍ଟସ୍ୟ ମାରି ପକାଇବ । ମୋ ପାଖରେ କ ଛଦ୍ମ୍ୟା ଦେଖାଇବ ସେ ।

ଏମିତ ନାନା କଥା ଭାବ ଭାବ ଯାଉ ଯାଉ ଗୋଟିଏ ଜାଗା ତା ଆଖିରେ ପଡ଼ିଲା । ପ୍ରଜାସ୍ୟ ନଆଁ ଜଳୁଛି । ଷ୍ଟରପାଖଯାକ ଗୁଡ଼ାଏ ମଣିଷ ଘେର ଠିଆ ହୋଇଛନ୍ତି । ଅଧିକାଂଶ ସେଥିରେ ଅଛନ୍ତି ଝିଅପିଲା । ସମସ୍ତେ ତାଳମାରି କ'ଣ କହୁଥାନ୍ତି କି ଗୀତ ବୋଲୁଥାନ୍ତି । ଏମିତବେଳେ ଜଣେ ସୁନ୍ଦରୀ ଯୁବତୀ ହଁ' ହାତରେ ଯୋଡ଼ିଏ ଥାଳ ଧରି ସେ ନଆଁ ଭିତରୁ ବାହାରି ଆସିଲା । ପାହାଡ଼ ଉପରେ ଜଣେ ଅଲେଖ ବାବା ବସିଥିଲେ । ସେ ତାଙ୍କ ଡାହାଣ ହାତ ଟେକଦେବାରୁ ଶ୍ଳେଷବକ୍ଷର ଆଲୁଅ ପରି ଗୋଟିଏ ଆଲୁଅ ସିଧା ସଳଖ ଆସି ସେହି ଯୁବତୀ ମୁହଁରେ ପଡ଼ିଲା ।

ନଆଁ ଷ୍ଟରପାଖରେ ଘେରି ରହିଥିବା ମଣିଷ ଓ ପିଲାଯାକ ବାକ୍ସି ଖଣ୍ଡେ ଖଣ୍ଡେ ବଢ଼ାଇଲେ । ଯୁବତୀ ଧରିଥିବା ଥାଳରୁ ବଡ଼ିଆ ବଡ଼ିଆ ଖାଦ୍ୟ ପଦାର୍ଥ ପରଷି ଦେଲା । ଲୋକମାନେ ପେଟ ପୂରାଇ ଖାଇ ଆହୁରି ବଳକା ହେବାରୁ ଫୋପାଡ଼ ଦେଲେ । ତା'ପରେ ସବୁ ଘଟଣା ଅଦୃଶ୍ୟ ହୋଇଗଲା ।

କାମସେଣା ଆଉ ବାଟ ଭୁଲିବ କ'ଣ । ଆବାକାବା ହୋଇ ଗୋଟିଏ ଚଉତଳେ କିଛି ବେଳଯାଏ ଅନାଇ ରହିଲା । ସମସ୍ତେ

ଅଦୃଶ୍ୟ ହେବାରୁ ଧୀରେ ଧୀରେ ଗୁଳିଲି ଘରକୁ । ମନଟା କିନ୍ତୁ ଘାରି ଖଟକା ଲାଗୁଥାଏ । ବଣ ମଝିରେ ଯେଉଁ ଘଟଣା ସବୁ ଦେଖାଗଲି ପୁଣି ଲୁଚିଗଲି, ଏସବୁ ହେଉ କ'ଣ ! କି ମାୟା, ଏ କଥା ଭାବ ଭାବ ମୁଣ୍ଡ ଭିତରେ ବିଜୁଳି ଖେଳିବାକୁ ଲାଗିଲା । ତେଣୁ ନିଜ ଦୁର୍ଗରେ ପହଞ୍ଚିବାକୁ ବିଳମ୍ବ ହେଉଥାଏ ।

ତେଣୁ ଅସୁରରାଜ କେତେ ସମୟ ପର୍ଯ୍ୟନ୍ତ ସାପଙ୍କ ବିଷକୁ ବେଖାତିର ଭାବେ ଉଡ଼ାଇ ଉଡ଼ାଇ ଗୁଳିଥିଲେ । ପରେ ତାହା ଏଭଳି ଉତ୍କଟ ହେଲା ଯେ, ମୋଟେ ସମ୍ଭାଳି ପାରିଲେ ନାହିଁ । ବେଳକୁ ବେଳ ନିଶାଣିଆ ମଣିଷ ପରି ଡୁଳାଇ ଡୁଳାଇ ଶୋଇ ପଡ଼ିଲେ ଘୋର ନିଦରେ ।

ବଜ୍ର ଜବାଟି ମେଲା ପଡ଼ିଛି । ବାହାର ପଟେ ଅସୁରରାଜ ଅଚେତ ହୋଇ ପଡ଼ିଛନ୍ତି । ମୁହଁରୁ ଓ ନାକରୁ ବାଜ ବାହାରି ମାଟି ଓଦା ହେଲାଣି । କାହାର କାହାର ଦେହରେ ଜଦା ପିମ୍ପୁଡ଼ି ବେଢ଼ି-ଲେଣି । ଏମିତିବେଳେ କାମସେଣା ଆସି ପହଞ୍ଚିଲା । ଏମାନଙ୍କୁ ଅନାଇଦେଇ ମୁଣ୍ଡ ତା'ର ବୁଲିଗଲା ଉଠିଲା । ଆଉ ତ ଜାଣିବାପାଇଁ କଥାଟା ଅନ୍ତପା ଅବସ୍ଥାରେ ନାହିଁ । ଘୁମସ୍ତଗାଣ୍ଡ ମୁହଁରୁ ସବୁ ଶୁଣା ହୋଇଛି । ତେଣୁ ସେ ହଠାତ୍ ଦୁର୍ଗ ଭିତରକୁ ଯାଇ କନ୍ଥା ନାଁ କିଛି ଗୋଟାଏ ମନ୍ତ୍ରତନ୍ତ୍ରର ଆୟୋଜନ କଲା । ତା ପରେ ଖଣ୍ଡେ କାଚୁ କାଠ ଆଣି ସବୁ ଅସୁରଙ୍କୁ ପାହାରେ ପାହାରେ ପିଟି କହିଲା—

ଉଠ ଉଠ ବିଷ ଗଲାଣି ହଟି
କାମସେଣା ଡାକେ ଉଠ ଚଟି ।

ଏତିକିବେଳେ ଅସୁରରାଜ ନିଦରୁ ଉଠିଲାଭଳି ଭଡ଼ ମୋଡ଼ ହୋଇ ଉଠି ବସିଲେ । କେହି ହାଇ ମାରିଲା । କେହି ଅଳସ ଭାଙ୍ଗିଲା । କେହି ଅବା ନିଦ ମଳମଳ ହୋଇ ପିଠି ମୁଣ୍ଡ କୁଣ୍ଡାଇ

ହେଲା । ଏମିତ ଏମିତ ସମସ୍ତେ ଉଠି ବସିଲାରୁ କାମସେଣା ପଚାରିଲା—ଖାଇଛ ?

ଅସୁରଯାକ ଏକାବେଳକେ କହି ଉଠିଲେ ନାହିଁ, ନାହିଁ, ନାହିଁ ।

କାମସେଣା କହିଲା—ତେବେ ଦୁର୍ଗ ଭିତରକୁ ଆସ । ଆଗେ ଖିଆପିଆ କର ପଛରେ ସବୁ କଥାବାର୍ତ୍ତା ହେବ ।

କାମସେଣା ଭିତରକୁ ଯିବାମାତ୍ରେ ଅସୁରଯାକ ତା' ପଛେ ପଛେ ଗଲେ । ଦୁର୍ଗ ଭିତରେ ଯାହାକିଛି ଥିଲା ସମସ୍ତେ ପେଟ ପୂରାଇ ଖାଇଲେ । କେମିତି କ'ଣ ହେଲା, ସେ ଯୁବକ ଜଣକ ଦେଖି-ବାକୁ କପରି ? ଜଣେ କହିଲା, କେମିତି ମନ୍ତ୍ରଧୂଳି ପକାଇ ହିଁଅଗୁଡ଼ାକୁ ଉଡ଼ାଇ ନେଲା, ସବୁକଥା ବସି କଥାବାର୍ତ୍ତା ହେଲେ ।

କାମସେଣା କେବଳ ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇବା ଛଡ଼ା କିଛି ଉତ୍ତର ଦେଲାନାହିଁ । ମନକଥା ମନରେ ମରି ରହିଲା । ତା'ର ଇଚ୍ଛା—କପରି ସେ ସୁନ୍ଦରସୁନ୍ଦରୀ ସଙ୍ଗେ ଦେଖା ହେବ । ତା ହଦୟର କାମନା ଜେତେ ଜୋର୍ ନ ଦେଖିବା ପର୍ଯ୍ୟନ୍ତ ଜୀବନରେ ଶାନ୍ତି ନାହିଁ ବୋଲି ଅନୁଭବ କରୁଥାଏ । ତେଣୁ ଅସୁରମାନଙ୍କୁ ଜାଗତଆର କରି ବାହାରି ପଡ଼ିଲା ସନ୍ଧାନରେ । ପ୍ରବାଦ ଅଛି—

ଦୈବ୍ୟଂ ବଳମବଶ୍ୟଂ ତୁ ଭୁଞ୍ଜନ୍ତି ପ୍ରାଣୀନଶ୍ବରଂ
କର୍ତ୍ତୁଂତଦନ୍ୟଥା କୋଽପି ନଭବେତ୍ ପ୍ରାଣୀ ସଙ୍କୁଳେ ।

ପ୍ରାଣୀକୁ ଯେତେବେଳେ ଦୈବ ଅବଳ ହୁଏ, ସେତେବେଳେ କେହି ତାକୁ ରକ୍ଷା କରି ପାରନ୍ତି ନାହିଁ । ବଳେ ବଳେ ସେ ବିପଦ ଆଗକୁ ଠେଲି ହୋଇଯାଏ । କାମସେଣା ସେହିପରି ଦୈବ ତାଡ଼ନାରେ ଯେଣେ ଇଚ୍ଛା ତେଣେ ଛୁଟି ଚାଲିଛି । ତା ଭାଗ୍ୟରେ ଯେ କ'ଣ ଅଛି, ସେ କଥା କିଏ କହି ପାରିବ ?

ସୁରସୁନ୍ଦରୀ ସଙ୍ଗେ ଦେଖା ହୋଇ ଉଚିତ ପ୍ରତିଶୋଧ ନେବ ବୋଲି ଖୁବ୍ ବ୍ୟଗ୍ର ହୋଇଉଠିଛି କାମସେଣା । ଦିନ ରାତି, ବାଟ ଅବାଟ ସବୁ ତା'ର ସମାନ ହୋଇଛି । ତେଣୁ ସେ ଅତିଶୟ ଉତ୍ତେଜିତ ଭାବେ ଯାଇ ପହଞ୍ଚିଲା—ଯାଦୁବ୍ରହ୍ମ-ଦୈତ୍ୟ ପାଖରେ । ଅନ୍ତରର ସମସ୍ତ ଭକ୍ତିଦେଇ ଖୁବ୍ ସ୍ତୁତି ପଢ଼ିଲା । ପୂଜାପାଠ କଲା । ଶଏଆଠ ଦଣ୍ଡବତ ପରେ ଆଖିରୁ ଲୁହ ଗଡ଼ାଇ କହିଲା—ହେ ପ୍ରଭୁ ଯାଦୁବ୍ରହ୍ମ ! ଥରେ ଦର୍ଶନ ଦେଇ ଅଭାଗିନୀକୁ ଚରିତାର୍ଥ କର ।

ବାରମ୍ବାର ଏହିପରି ପ୍ରାର୍ଥନା କରିବାରୁ ଯାଦୁବ୍ରହ୍ମଙ୍କ ମନରେ ଦୟା ହେଲା । ସେ ଆଉ ନୀରବ ନ ହୋଇ ତାକୁ ଆସି ଦର୍ଶନ ଦେଲେ ଓ ପଚାରିଲେ—କ'ଣ ଚାହୁଁଛୁ ?

ପଚାରିଲା—ସୁରସୁନ୍ଦରୀ ବୋଲି ଗୋଟିଏ ଯୁବତୀ କାହିଁକି ମୋ ସଙ୍ଗେ ପ୍ରତିଦ୍ୱନ୍ଦୀ ହୋଇ ଠିଆ ହୋଇଛି, ସେ କଥା ମୁଁ ମୋଟେ ବୁଝି ପାରୁନି । ଦୟାକରି ତା'ର ପରିଚୟ ଦିଅ ଓ ମୁଁ କିପରି ତା ଠାରୁ ଯଥୋଚିତ ପ୍ରତିଶୋଧ ନେଇ ପାରିବି, ସେ ଉପାୟଟା ବତାଇ ଦିଅ ।

ଯାଦୁବ୍ରହ୍ମ ଅଳ୍ପ ଟିକିଏ ମୃଦୁକରହସା ହେଇ କହିଲେ—ଆଲୋ ଝିଅ କାମସେଣା ! ନ ବୁଝି, ନ ସୁଝି ତୁ ଗୋଟିଏ ଆଚ୍ଛା ଲୋକ ବିପକ୍ଷରେ ଯିବାକୁ ବସିଛୁ । ସେଥିରେ ତୋର ଲାଭ କ୍ଷତି ଯେ କ'ଣ ହୋଇ ପାରିବ, ସେ କଥା ମୁଁ ମୋଟେ ଜାଣିପାରୁନି । ତଥାପି ତାକୁ ଯେବେ ଚହ୍ନିବାକୁ ଇଚ୍ଛା କରୁଛୁ, ତେବେ ମନଦେଇ ଶୁଣ, ମୁଁ ବୁଝାଇ ଦେଉଛି ।

କଥାଟା ଶୁଣିବାପାଇଁ କାମସେଣା ଆଗ୍ରହୀ ହୋଇ ବସି ରହିଲା । ଯାଦୁବ୍ରହ୍ମ ଆରମ୍ଭ କଲେ--ମହୋଦ୍ର ନଗର ରାଜାଙ୍କ ରାଣୀ ଶୋଭାବତୀ । ତାଙ୍କୋ ମା ନାମ କନକାବତୀ, ଆଉ

ଗୋଟିଏ କୃଷକର ସ୍ତ୍ରୀ ଅମ୍ବୁବଣ୍ଟ, ଏ ତିନିଜଣଯାକ ସ୍ତ୍ରୀ ଭୁବନେଶ୍ୱର ମହାଦେବଙ୍କୁ ଏକ ସମୟରେ ପୂଜା କରୁଥିଲେ । ମାତ୍ର କେହି ତାହା କଥା ଜାଣନ୍ତିନି । ଜଣେ ସକାଳୁ ଆସି ଦିନ ପ୍ରହରକ ଯାଏ ପୂଜା କରେ । ଆଉ ଜଣେ ଦି'ପ୍ରହରରେ ଆସି ସନ୍ଧ୍ୟାଯାଏ ପୂଜେ । ଆଉ ଜଣେ ରାତି ଅଧରୁ ଆସି ତିନି ପ୍ରହର ପରେ ଯାଏ । ଶିବ କିନ୍ତୁ ସମସ୍ତଙ୍କ ସେବାରେ ସନ୍ତୋଷ ଥାଆନ୍ତି ।

ସମସ୍ତେ ଆସିବାରୁ ଶିବ ଜଣ ଜଣ କରି ବର ଯାଚିଲେ । ଶୋଭାବତୀର ସକାଳ ପାଳି । ସେ ମାଗିଲା—ମୋର ଗୋଟିଏ ପୁଅ ହେବ ଯେ ତା ମୁଣ୍ଡରେ ଥିବ ମଣି । ସେ ଉଡ଼ିବ, ବୁଡ଼ିବ, ଅମର ହେବ । ନିଆଁରେ ପଶିଲେ ପୋଡ଼ିବ ନାହିଁ ।

ଶିବ କହିଲେ—ସବୁ ହେବ । ମାତ୍ର ଅମର ବର ମୋ ହାତରେ ନାହିଁ । ତା'ପରେ ତା ମା'ର ପାଳି । ସେ ମାଗିଲା—ମୋର ଗୋଟିଏ ଝିଅ ହେବ ଯେ, ଯାଦୁ ବିଦ୍ୟାରେ ତାକୁ କେହି ବଳାଇବେ ନାହିଁ ।

ଶିବ କହିଲେ—ଯୋ ଡମ୍ବରୁ ବାଜେ ତାକୁ ବଳ ତାକୁ ବଳ । ମୁଁ କେମିତି ସେ କଥାଟା କାଟିବି । ବର ଦେଲି ତୋ ଝିଅ ଯାଦୁ-ବିଦ୍ୟାରେ ଖୁବ୍ ଜଗଜ୍ଜିଣା ହେବ । ତା'ପରେ ବୁଦ୍ଧିମନ୍ତ ଓ ସୁନ୍ଦରୀ ହେବ । ତାକୁ ଦେଖିଲେ ମୁନି ମନ ବି ଟଳି ପଡ଼ିବ । ଫାଶ ପକାଇ ପବନକୁ ଧରିବାକୁ ଇଚ୍ଛା କଲେବି ଧରି ପାରିବ ।

ତା' ପରେ ପଡ଼ିଲା—ଅମ୍ବୁବଣ୍ଟ ପାଳି । ସେ ମାଗିଲା ପ୍ରଭୁ ଝିଅ ହେଉ କି ପୁଅ ହେଉ ମୋର ମନାନାହିଁ । ତୁମର ଯାହା କରୁଣା ତାହା ହଉ, ମାତ୍ର ଏତିକି ହେବ, ସେ ପିଲାଟି ଯେପରି ଅନେକ ଲୋକଙ୍କର ଉପକାର କରିବ ଓ ଗାଁଘରେ ବନ୍ଦ୍ୟ ହେବ ।

ଶିବ କହିଲେ—ତୋ କଥାରେ ମୁଁ ଭାରି ସନ୍ତୋଷ ହେଲି । ତେଣୁ ତୋର ଯୋଉ ଝିଅଟି ହେବ, ସାକ୍ଷାତ ଗୋଟିଏ ଦେବୀପରି । ସେ ଇଚ୍ଛାକଲେ ନିଜ ମୁଣ୍ଡରେ ସୁନାପଦ୍ମ ଫୁଟାଇ ହସନ୍ତୁ ମୁକ୍ତା ଝରାଇବ । ମନେକଲେ ବଢିବ ମନେହଲେ ବଢିବନି । ସବା ଶେଷରେ ଯାହା ମୁହଁରେ ଚାହିଁଅଛୁ ସେଇପୁଅକୁ ବାହାହୋଇ ରାଣୀ ହୋଇ ବସିବ ।

ସବୁ ଓଷେଇଭୁଣୀଯାକ ବର ନେଇଗଲେ । ମାତ୍ର କେହି କାହାରି କଥା ଜାଣିଲେ ନାହିଁ । ତୁମେ ଜନେଟିଯାକ ପିଲା ବ ଏକାଦିନକେ ଜନ୍ମହେଲ । ଦେବ ଈସିଲା ତୋ ବାପା ସାଙ୍ଗରେ ଶୋଭାବତୀ ସ୍ୱାମୀର ହେଲା ମନାନ୍ତର । ମନାନ୍ତରରୁ ଯୁଦ୍ଧ । ଶେଷକୁ ଅକାଳରେ ପଡ଼ି ବାପ ମଲେ । ମା ଥିଲେ ସତୀ । ତେଣୁ ସେ ବର ସାଙ୍ଗରେ ସହମରଣ ହେଲେ । ତୋ'ତ ସେତେବେଳକୁ ମୋଟେ ହୋଇଥିଲା ପାଞ୍ଚୋଟି ବରଷ । ପରେ ତୁ ବଡ଼ ହୋଇ ଯିବାରୁ ବୁଦ୍ଧି ହୋଇଗଲା । ଜାତି ଭାଇଙ୍କ ମୁହଁରୁ ବାପ ମରିବା କଥା ଶୁଣି ଲାଗିଛୁ ଶତ୍ରୁଠାରୁ ପ୍ରତିଶୋଧ ନେବାକୁ । କିନ୍ତୁ ଅମୁବତୀ ଝିଅ ଏ କଥା ଜାଣି ପାରିଛି ।

ପଚାରିଲା—ସେ କାହିଁକି ଜାଣିଲା ?

କହିଲେ—ଅମୁବତୀର ଯୋଉଦିନ ଝିଅ ଜନ୍ମହେଲା, ସେଦିନ ସମସ୍ତେ ତା ରୂପ ଦେଖି ନାଁ ଦେଲେ ସୁରସୁନ୍ଦରୀ । ହେଲେ କ'ଣ ହେବ, ବାପଟା ତା'ର ଭାରି ହୁଣ୍ଡା ତପସ୍ୱୀ ଲୋକ । ଜଙ୍ଗଲ ଧରି ଶଏପ୍ରାଣୀ ପୋଷେ, ନିଜେ ବି ପୋଷିହୁଏ । ତା'ର ଇଚ୍ଛା ପୁଅଟିଏ ହୋଇଥିଲେ ଯୁଦ୍ଧ କାମରେ ସାହାଯ୍ୟ କରି ଥାଆନ୍ତା । ଝିଅଟାଏ ହୋଇ କି' କାମରେ ଆସିବ । ତେଣୁ ସେ ତାକୁ ନେଇ ପାଣିକି ଫିଙ୍ଗିଦେଲା । ଏ କଥା ଦେଖି ମା' ତା'ର ଦୁଃଖରେ

ଋଷି ଲାଗି ଇ ଆତ୍ମହତ୍ୟା କଲା । ଶିବଙ୍କ ବର ବିଫଳ ନ ହେଉ ବୋଲି ବଡ଼ୁର କରି ମା' ଗଙ୍ଗାଦେବୀ ନେଇ ପିଲାଟିକୁ ପାଳିଲେ, ନାନାପ୍ରକାର ବେଦବିଦ୍ୟା ଶିଖାଇଲେ । ପାଠଶାଠ ପଢ଼ିଲା, ଏପାରି ଗଲା ସେପାରି ନେଲା । ମାଛକୁ ମଣିଷ ଓ ମଣିଷକୁ ମାଛକରି ଦେଲା । ମେଛେଟବେଳକୁ ତାକୁ ହୋଇଥାଏ ବାର ବରଷ ।

ବାପର ବହୁତ ଧନସମ୍ପତ୍ତି ଥିଲେ କ'ଣ ହେବ, ବିପତ୍ନୀକ ଓ ନିଃସନ୍ତାନ ହୋଇ ଘୋର କଷ୍ଟରେ କାଳ କଟାଉଥାଏ । ଗଙ୍ଗାଦେବୀ ଯାଇ ଅଲେଖ ନିରଞ୍ଜନଙ୍କୁ ଡାକ ପୁଅଟିର ସମସ୍ତ କଥା କହିଲେ ଓ ତାକୁ ଆଶୀର୍ବାଦ ଦେବାପାଇଁ ଅନୁରୋଧ କଲେ ।

ଅଲେଖ ନିରଞ୍ଜନ ପୁଅଟିକୁ ଦେଖି ଭାରି ଖୁସି ହୋଇ ଆଶୀର୍ବାଦ ଦେଲାପରେ କହିଲେ—ମୋ ବରରେ ତୋତେ ମହାଅଗ୍ନି ବିଦ୍ୟା ପ୍ରାପ୍ତହେଉ ।

ପଚାରିଲା—ମହାଅଗ୍ନି ବିଦ୍ୟା କ'ଣ ?

କହିଲେ—ସେହି ବିଦ୍ୟା ପାଇବା ଦିନୁ ସୁରସୁନ୍ଦରୀ ପ୍ରତିଦିନ ତୋହରି ଅଗ୍ନି ସ୍ଥାପନ କରି ସେଥିରେ ପଶେ । ସେହି ହେଲା ତା'ର ଅଗ୍ନିସ୍ନାନ । ତା'ପରେ ଅଗ୍ନିଦେବଙ୍କ ପ୍ରସାଦରେ କୋଟି କୋଟି ଲୋକଙ୍କପାଇଁ ପାଏ ଅନୁହତ ଖାଦ୍ୟ ।

କାମଧେନୁ ଗ୍ରନ୍ଥରେ ଗୋଟିଏ ଛନ୍ଦକା ପଶିଲା । ସେଦିନ ରାତରେ ଆସିଲାବେଳେ ଯେଉଁ ଯୁବତୀ ଅଗ୍ନିରୁ ବାହାରି ଶହ ଶହ ଲୋକଙ୍କୁ ଖାଦ୍ୟ ବାଣ୍ଟିଲା, ସେହି କ'ଣ ତେବେ ସୁରସୁନ୍ଦରୀ ! ଏହି କଥାଟା ବାରମ୍ବାର ତା ମନ ଭିତରେ ଆଘାତ କଲା । ମନ କଥା ମନରେ ଲୁଚି ପୁଣି ପଚାରିଲା, ମୁଁ କ'ଣ ତାକୁ ବିଦ୍ୟାରେ ଜିଣି ପାରିବି ନାହିଁ ।

କହିଲେ—ଆମେ ଝିଅ, କଥାରେ ଅଛି—

ଯାହା ସହୁଛି କହଆ ଶାଶୁ ତା ଉପରେ ମନ୍ତ୍ର କରନ୍ତୁ ।

ଏହି କଥାରୁ ବୁଝି ପାରବୁ । ଗୋଟିଏ ପିଲାକୁ ଶିବ, ଗଙ୍ଗା, ଅଲେଖଗୋସାଇଁ ସମସ୍ତେ ସାହା ହୋଇଛନ୍ତି, ତାକୁ ଜିଣିବାକୁ ହେଲେ ସେହିଭଳି ଚେଷ୍ଟା ଦରକାର ।

ପଦ୍ମରଲି—ସୁରସୁନ୍ଦରୀ ଏହିକ୍ଷଣି ଅଛି କେଉଁଠି ?

—ଅଲେଖବାବା ତାକୁ ଆଣି ତା ବାପ ପାଖରେ ଥୁଇଛନ୍ତି ।

ପଦ୍ମରଲି—ମୋ ସଙ୍ଗେ ଶତ୍ରୁତା କରୁଛି କାହିଁକି ସେ ?

ଯାଦୁବ୍ରହ୍ମ ପୁଣି ହସିଲେ । ଅଳ୍ପ ଟିକଏ ଗୁମ ଖାଇଯାଇ କହିଲେ—ଶିବ ତାକୁ ଦିନେ ସ୍ୱପ୍ନରେ କହିଛନ୍ତି—ଯଦି ସରସିଜ କୁମାର ହାତଧରି ଘଣୀ ହେବାକୁ ତୋର ଇଚ୍ଛାଥାଏ, ତେବେ ତୁ କାମସେଣାକୁ ପ୍ରତିରୋଧ କର । ସେ ଯେପରି ମଧୁକୁଣ୍ଡ ପାଖରେ ବଳଭୋଜ ଦେଇ ନ ପାରବ ଓ ବାରହାତିଆ ଖଣ୍ଡା ତା ହାତକୁ ନ ଯିବ ଏଥିପାଇଁ ଖୁବ୍ ସାବଧାନ ।

କାମସେଣାର ଧୈର୍ଯ୍ୟ ଆଜ ଚ୍ୟୁତ ହୋଇ ରହିପାରିଲାନ । ଭୁବନେଶ୍ବର ଶିବଙ୍କ ଉପରେ ତା'ର ଘୋଷଣ ରାଗ ଆସିଲା । ତେଣୁ ସେ ଯାଦୁବ୍ରହ୍ମଙ୍କୁ ନ ପଚାରି ନ ବତାରି ଦଉଡ଼ିଲା ପ୍ରଚଣ୍ଡ ବେଗରେ । ଆଗରୁ ଭୁବନେଶ୍ବର ଶିବଙ୍କ ମନ୍ଦିର ସେ ଦେଖିଥିଲା । ତେଣୁ ବେଶୀ ବଖଣ୍ଡିବାକୁ ପଡ଼ିଲାନ । ପହଞ୍ଚିଲାମାତ୍ରେ ଶିବଲିଙ୍ଗକୁ ଉଠାଇ ଆଣି ଅଗଣାରେ କଚଡ଼େଲା । ତାପରେ ସେ କହିଲା—ଦେଖ ଶିବ । ତୁମେ ଯଦି ମୋ କଥା ନବୁଝିବ, ତାହେଲେ ତୁମକୁ ନେଇ ନିଆଁରେ ଚପାଡ଼ ପୋଡ଼ ମାରିବ ।

ଶିବ ବଡ଼ ଅଡୁଆରେ ପଡ଼ିଲେ । ତେଣୁ ବାଧ୍ୟ ହେଲେ ନିଜ ରୂପଧରି ତା ସଙ୍ଗେ କଥାବାର୍ତ୍ତା କରିବାକୁ । ସେଇଆ ହିଁ ହେଲା । ଶିବ ଆପଣାର ରୂପଧରି ପଚାରିଲେ—କ'ଣ କହୁଚୁ କହ ।

କାମସେଣା ପଚାରିଲା—ତୁମେ ସେହି ଶିବ ତ ?

ଶିବ ହଁ କହିଲେ ।

କାମସେଣା ପୁଣି କହିଲା—ତୁମେ ତ ସମସ୍ତଙ୍କୁ ସବୁ ଦେଇ ପାରୁଛ । ମୋତେ କାହିଁକି ସୁନ୍ଦର ରୂପ ଦେଉନାହଁ !

ଶିବ କହିଲେ—ତୁ ତ ଖୁବ୍ ସୁନ୍ଦରୀ । ଆଉ କପରି ସୁନ୍ଦରୀ ହେବାକୁ ମନ କରୁଛୁ ?

କାମସେଣା କହିଲା—ସୁରସୁନ୍ଦରୀ ଅପେକ୍ଷା ମୋତେ ଦଶଗୁଣ ସୁନ୍ଦରୀ କରିଦିଅ ।

ଶିବ କହିଲେ—ଦେଲୁ । ତା'ପରେ ଆଉ କ'ଣ ?

କାମସେଣା—ମୁଁ ହସିଲେ ସୁନାର ଚମ୍ପା ଝଡ଼ିବ । ଚାଲିଗଲେ ବାଟରେ ମଣି ମାଣିକ୍ୟ ଖଚିତ ପଦ୍ମ ଫୁଟିବ ।

ଶିବ କହିଲେ—ସେ ତ ହେଲା । ତା'ପରେ ଆଉ କ'ଣ ?

କାମସେଣା କହିଲା—ମୁଁ ସରସିଜ କୁମାରକୁ ବାହାହେବି ।

ଶିବ ହଁ ବୋଲି କହି ଆସିଲାବେଳକୁ ଗଙ୍ଗାଦେବୀ ଆସି କହିଲେ ମିଥ୍ୟାବାଦୀ ଦେବତା ତୁମେ । ଝିଅଟାକୁ ମିଛ କଥାରେ ଠକୁଛ କାହିଁକି ?

କାମସେଣାର ସନ୍ଦେହ ହେବାରୁ ଟିକିଏ ହସିଦେଲା । ସତକୁ ସତ ଟୋକେଇଏ ଖଣ୍ଡେ ସୁନା ଚମ୍ପା ଝଡ଼ି ପଡ଼ିଲା । ତା' ପରେ ଦି' ଖୋଜ ଚାଲିଯିବାମାତ୍ରେ ଯୋଡ଼ିଏ ମଣିମୁକ୍ତା ଖଚିତ ପଦ୍ମଫୁଲ ଫୁଟିଲା । ତା' ପରେ ଦଉଡ଼ିଲା ପାଖରେ ଥିବା ଜଳଧାର ନିକଟକୁ । ଖୁବ୍ ନିର୍ମଳ ଜଳ, ସେ ଅନାଇଲା ମୁହଁ ଦେଖାଗଲା ।

କାମସେଣା ଏଥର ନିଜକୁ ନିଜେ ଚିହ୍ନି ପାରିଲା ନାହିଁ । ପୂର୍ବ ଅପେକ୍ଷା କେତେ ସୁନ୍ଦରୀ ହୋଇଛି ସେ । ମୂର୍ତ୍ତି ଭୁଲି ରୂପ । ସେ ମାଦକତାରେ ନିଜେ କାମସେଣା ବିଭୋଳ ହୋଇଗଲା ।

ପଛକଥା ଆଉ ମନେ ପଡ଼ିଲାନି ତା'ର । ତେଣୁ ଆଉ ଶିବଙ୍କଆଡ଼େ ନଫେରି ଦଉଡ଼ିଲା ମହେନ୍ଦ୍ରନଗର ଖୋଜିବାକୁ ।

ପର୍ବତ ଉପରେ ବସି ଅଲେଖ ନିରଞ୍ଜନ ହସି ଉଠିଲେ । ଗଙ୍ଗାଦେବୀ ନିଜେ ଶିବଲିଙ୍ଗ ନେଇ ଯଥାସ୍ଥାନରେ ରଖିଲେ ଓ ଧୀରେ ଧୀରେ ନିଜ ସ୍ଥାନକୁ ଚାଲିଗଲେ ।

ସୁରସୁନ୍ଦରୀର ବର୍ତ୍ତମାନ ଅନ୍ୟ କଥାରେ ଧ୍ୟାନ ନାହିଁ । ସେ ବସିଛି ମଧୁକୁଣ୍ଡ ପାଖରେ । ବିରାଟ ଶିଶୁମେଳା । ଛଅଶହ ଆଠଟି ବାଳିକା ବସି ମଧୁକର ଗନ୍ଧର୍ବଙ୍କୁ ସ୍ତୁତିପାଠଦ୍ୱାରା ପ୍ରାର୍ଥନା କରୁଛନ୍ତି । ନିଜେ ହୋମବେଦୀ ଅଗ୍ନି ସ୍ଥାପନ କରି ବସିଛି । ତା ମଝିରେ ଏକସ୍ୱରରେ, ଏକମନ ଓ ଏକ ଧ୍ୟାନରେ ଡାକୁଥାଏ—

ହେ ଗନ୍ଧର୍ବେଶ୍ୱର ତୁମେ ମଧୁକର
ମୁଁ ଅତି ହୀନ ଯୁବତୀ
ମାଗୁଛି କଲ୍ୟାଣ ନ ହୋଇ ଦାରୁଣ
ବିନାଶ କର ଦୁର୍ଗତି ।
ଧାନ ସେବା ମୋର ସେଣା ନିରନ୍ତର
ଯେଣୁ ଆହେ ମହୀଆନ —
ସୁବର୍ଣ୍ଣ ଖଡ଼ଗ ଗୋଟି ମୋତେ ବେଗେ
କରି କର ସମ୍ପ୍ରଦାନ ।
ଦୁଷ୍ଟା ରାକ୍ଷସୀର ଦମ୍ଭ ହୋଇ ଦୂର
ଅଶାନ୍ତ ହେବ ବିଲୟ
ହସିବ ଜଗତ ହେବ ବିଦୁରିତ
ଦେଶୁ ବୃଥା ଲୋକକ୍ଷୟ ।

ସୁରସୁନ୍ଦରୀର ଶିଶୁମେଳା ଓ ଅଗ୍ନି ତପସ୍ୟା ବେଳକୁବେଳ ପ୍ରଚଣ୍ଡ ହୋଇ ଉଠିଲା । ସ୍ତବଶ୍ଳୋକ ନାଦରେ ଆକାଶ ମଣ୍ଡଳ ଉନ୍ମମାନ ହେବା ଦେଖି ନିଜେ ଦେବରାଜ ଇନ୍ଦ୍ର ଆସି ମଧୁକର ଗନ୍ଧର୍ବଙ୍କୁ

କହିଲେ ମଧୁକର ! ତୁମେ କ'ଣ ନିଶା ଖାଇଛନ୍ତି ଏପର୍ଯ୍ୟନ୍ତ ସୁରସୁନ୍ଦରୀଙ୍କ ଚିହ୍ନିବାକୁ ନାହିଁ।

ମଧୁକର ଡରିଯାଇ କହିଲା-କ'ଣ ହେଲା ପ୍ରଭୁ ?

ଇନ୍ଦ୍ର କହିଲେ-ତପସ୍ୟାରେ ବସି ସୁରସୁନ୍ଦରୀ ଯାହା ମାଗୁଛି ତାକୁ ତାହା ଶୀଘ୍ର ଦେଇଦିଅ । ତା ନା ହେଲେ ଗଙ୍ଗାଦେବୀ ରାଗ ହେବେ । ଶିବଙ୍କୁ ରଗାଇବେ । ସ୍ୱୟଂ ଅଲେଖ ଧର୍ମ ନିରଞ୍ଜନ ତୁମର ଏ ଅନ୍ୟାୟ ବରଦାସ୍ତ ନ କରି ବିପକ୍ଷରେ ଠିଆହେବେ । ଫଳରେ ତୁମେତ ଫସାରହିବ ଯିବ । ଆମକଥା ବି ଗାଧୁଣୀ ଗାଇଲେ ସରିବନି ।

ଇନ୍ଦ୍ରଙ୍କ କଥା ଶୁଣି ମଧୁକର ଡରରେ ପିଳେଇ ଠକ ଠକ ହୋଇ ଥରିବାକୁ ଲାଗିଲା । ସେ ଗଛ ଉପରେ ବସି ବଡ଼ଲୋକ ଦେଖାଇ ହେବ କ'ଣ, ଆଖିପିଛୁଳା ମାତ୍ରକେ ଖଣ୍ଡାଟି ନେଇ ସୁର ସୁନ୍ଦରୀକୁ ଦେଇ ପକାଇଲା ।

ସୁରସୁନ୍ଦରୀ ପଚାରିଲା—ସ୍ୱାକୁ ଭାଙ୍ଗି ଦେବ ନା ରଖିବ ? ମଧୁକର କହିଲା—ତୋ ଇଚ୍ଛା ।

ପଚାରିଲା—କାମଧେଣୀ ଅସୁରୁଣୀ ଏ ବାଳକମାନଙ୍କୁ ଧରି ଆଣିଥିଲା ମଧୁକୁଣ୍ଡରେ ବଳି ଦେବାପାଇଁ । ମୁଁ କୌଶଳରେ ସେମାନଙ୍କୁ ବଞ୍ଚାଇ ରଖିଛି । ବର୍ତ୍ତମାନ କ'ଣ କରାଯିବ ?

କହିଲା—ମୁକ୍ତକରି ତାଙ୍କ ଘରକୁ ପଠାଇଦେ ।

ସୁରସୁନ୍ଦରୀ ଆହୁରି ଖୁସି ହୋଇଗଲା । ନିଆଁ ବାହାରି ପିଲମାନଙ୍କୁ କହିଲା—ଆରେ ପିଲାଏ, ଆସ ଲଡ଼ୁ ମିଠାଇ ଖାଅ । ଆଜି ସମସ୍ତେ ଯାଇ ଘରେ ପହଞ୍ଚିବ ।

ପିଲାମାନେ ଖୁସିରେ ତାଳି ବଜାଇଲେ । ପେଟ ଭରି ଲଡ଼ୁ ଖାଇଲେ । ତା'ପରେ ପଚାରିଲେ ନାନୀ ! ବୋଉ ବାପା ପଚାରିଲେ କ'ଣ କହିବ ?

କହିଲା—କହିବ, ଆମକୁ କାମସେଣା ଅସୁରୁଣୀ ଧରି ନେଇଥିଲା ବଳି ଦେବାକୁ । ସୁରସୁନ୍ଦରୀ ଦେଖି ତା ହାତରୁ ମୁକ୍ତ କରି ଘରକୁ ପଠାଇ ଦେଲା । ଜଣକୁ ପାଞ୍ଚୋଟି ଲେଖାଏଁ ମୁକ୍ତା ବି ଦେଇଛି । ଏହା କହି ସବୁ ଝିଅଙ୍କ ହାତରେ ପାଞ୍ଚୋଟି ଲେଖାଁ ମୁକ୍ତା ଦେଲା । କହିଲା—ସମସ୍ତେ ଧାଡ଼ି ହୋଇ ଠିଆ ହୁଅ । ଅଲେଖ ନିରଞ୍ଜନ ଧର୍ମଦେବତାଙ୍କୁ ନମସ୍କାର କର ।

ସବୁ ଝିଅଯାକ ସେହିପରି କଲେ । ସୁରସୁନ୍ଦରୀ ଚନ୍ଦ୍ରମୁଠା ଧୂଳି ମନ୍ତ୍ରକରି ଉଡ଼ାଇ ଦେବାରୁ ସବୁ ଝିଅଯାକ ଉଭାନ ହୋଇଗଲେ ।

ତାପରେ ସୁରସୁନ୍ଦରୀ ଖଣ୍ଡାଟି ହାତରେ ଧରି ଆଉ ଟିକିଏ ଆଗକୁ ଯାଇ କହିଲା—

ଆସ ରଜା ଗୋଜାରାମ ରାଣୀ ରାଣୀ ସଙ୍ଗେ
ସାନ୍ତ୍ରୀ ମନ୍ତ୍ରୀ ପ୍ରଜାଯାକ ହସି ହସି ରଙ୍ଗେ ।

ରାଜ୍ୟକୁ ଯାଅ କାର୍ଯ୍ୟକର ସୂର୍ଯ୍ୟ ଥାଉ ଥାଉ
କାଳ ଅସୁର ଦାଉ ତୁମକୁ ନ କରିବ ଆଉ ।

ଏତିକି କହି ହାତ ହଲାଇ ଦେବାମାତ୍ରେ ଗୋଜାରାମ ରାଜାଙ୍କର ସବୁ ଲୋକଯାକ ଦେଖା ଦେଇ ଅଦୃଶ୍ୟ ହୋଇଗଲେ । ସୁରସୁନ୍ଦରୀ ହସି ହସିକା ଚାଲିଗଲା ନିଜ ଘରକୁ ।

କାମସେଣା ଯାଇ ପହଞ୍ଚିଛି ମହାନ୍ଦ୍ର ନଗରରେ । ନଗର ଶେଷ ମୁଣ୍ଡରେ ଖୋଲିଛି ଖଣ୍ଡେ ଧର୍ମଶାଳା । ଅନ୍ନ, ଜଳଛତ୍ର, ବସ୍ତ୍ରଦାନ ଆଣିବାକୁ ଦିନରାତି ଶହ ଶହ ଲୋକ ଏକଜ ହୋଇ ବଇଠି ଛନ୍ତି । ଯାହା ମୁହଁରେ ଶୁଣ କୁମାରୀ କାମସେଣାର ପ୍ରଶଂସା । ତା ରୂପର ପ୍ରଶଂସା ସତେ ଯେମିତି ତା'ର ପ୍ରଶଂସା ଗାଇବାକୁ ରାଜ୍ୟର ଲୋକମାନେ ଏକ ମୁଖରେ ଶତମୁଖ ହେବାକୁ ଚେଷ୍ଟା କରୁଥାନ୍ତି ।

ରଜା ମନୋହରପ୍ରସାଦ କାମସେଣାର ପ୍ରଶଂସା ଶୁଣି ଶୁଣି ବଧିର ହୋଇ ପଡ଼ିଲେଣି । ବେଳେ ବେଳେ ତାଙ୍କ ମନରେ ହିଂସା ବି ଆସୁଥାଏ । ଭଲରେ ଭଲ ଆମେ ରାଜ୍ୟର ରାଜା । ଲୋକେ ଆମକୁ ପ୍ରଶଂସା ନ କରି ଗୋଟାଏ କାହୁଁ ଅଇଲା ବାରବୁଲି ଛତରଖାଇଟାକୁ ପ୍ରଶଂସା କରୁଛନ୍ତି । ପୁଣି ବେଳେ ବେଳେ ଭାବନ୍ତି, ଝିଅଟା କଏ, କେଉଁଠୁ ଆସିଛି । କୌଣସି ବଡ଼ଲୋକ, ରଜାର କୁମାରୀ ହୋଇ ନଥିଲେ ଏତେଗୁଡ଼ାଏ ଖର୍ଚ୍ଚ କରନ୍ତା କୁଆଡୁ ।

ଏମିତି ଏମିତି ଭାବ ଭାବ ଥରେ ତାକୁ ଦେଖିବାକୁ ରଜାଙ୍କ ମନହେଲା । ତେଣୁ ସେ ସୁଆସ୍ମ ଗଉଡ଼ ପଠାଇ ନଅରକୁ ଆସିବା ପାଇଁ ଡକାଇ ପଠାଇଲେ ।

କାମସେଣା କହିଲା—ସେ କଥା ହୋଇ ପାରିବନି । ମୁଁ ଗୋଟିଏ ରାଜକୁମାରୀ, ଅବିବାହିତା । ଆସିଛି ଦାନପୁଣ୍ୟ କରି ପୁଣି ମୋ ରାଜ୍ୟକୁ ଫେରିଯିବି । ମହାରାଜା ଯେବେ ମୋତେ ଦେଖିବାକୁ ଇଚ୍ଛା କରନ୍ତି, ତେବେ ଚିତ୍ରପଟ ଦେଖି ପାରିବେ । ଅବିବାହିତା କୁମାରୀ ନିଜ ଇଚ୍ଛାରେ ଅନ୍ୟ ରାଜାଙ୍କ ଦୁଆରକୁ ଯିବାପାଇଁ ବାପାଙ୍କର ମନାଅଛି । ତେଣୁ ମୁଁ ଯାଇ ପାରିବନି । ଏହା କହି ବେହେରାମାନଙ୍କ ହାତରେ ନିଜର ଚିତ୍ରପଟ ପଠାଇଦେଲା ।

ରଜା, ମନ୍ତ୍ରୀ ଓ ପାଖ ଲୋକମାନେ ଛବି ଦେଖି କାବା ହୋଇଗଲେ । ସଂସାରରେ ଏଭଳି ରୂପବତୀ ଝିଅ ମିଳିବା କଷ୍ଟ । ପାଖ ଲୋକମାନେ ଭିତରେ ଚୁପଚାପ ହେଲେ—ଏ କନ୍ୟା ନିଶ୍ଚେ ଆମ ଯୁବରାଜଙ୍କ ଲାଗି ।

କଥାଟା ରାଣୀଙ୍କ କାନକୁ ଗଲା । ରାଣୀ ତାମଯାନରେ ଯାଇ କାମସେଣାକୁ ଦେଖି ଖୁବ୍ ପ୍ରଶଂସା କଲେ । ପ୍ରଥମ ଦେଖାସାକ୍ଷାତ ହେତୁ ଗୋଟିଏ ମୋତିହାର ଓ ଗୋଟିଏ ହୀରାବସା ମୁଦି ଦେଖା

ବର୍ଣ୍ଣନା ଦେଇ ଆସିଲେ । ତା ପରଦଣ୍ଡେ କାମସେଣା ସୁନାଚମ୍ପାର ସ୍ୱର୍ଣ୍ଣ ହାର ଓ ଦେଢାଏ ମୁକ୍ତା-ମାଣିକ୍ୟର ପଦ୍ମଫୁଲ ପଠାଇ ଦେଲା । ସମସ୍ତଙ୍କ ମନ ମାନ ଯାଉଥାଏ । ଏକା ହାକାଥାଏ କୁମାର ।

ସେ ଖୁବ ଧୀର ଗମ୍ଭୀର ଚଞ୍ଚଳ ପିଲା । ସାମାନ୍ୟ କଥାରେ ତରତର ହୋଇ ଝସିଯିବା ତା' ଜାତକରେ ନାହିଁ । ତେଣୁ ସେ ନିଜେ ନ ଯାଇ ଗୋଟିଏ ବାଳକ ପଠାଇଲା ଦେଖି ଆସିବାକୁ ।

କଥାରେ ଅଛି—

ବର୍ତ୍ତନା ନାସ୍ତିତେ ଧୂର୍ତ୍ତଃ ।

ବାଳକ ଜାତି ସବୁଦିନେ ଚତୁର । ସେ ଯାଇ କାମସେଣା-ଥିବା ଧର୍ମଶାଳାରେ ପହଞ୍ଚି ମାଗିଲା ଖାଇବାକୁ । ରନ୍ଧୁଣିଆ ପଣ୍ଡାମାନେ ଖାଦ୍ୟ ଆଣି ଦେବାରୁ କହିଲା—ସେ କଥା ହୋଇ ପାରିବନି । ମୁଁ ହେଉଛି ରାଜାଙ୍କ ବାଳକ । ଦୈବ ଦୁର୍ବନେ ଆସି ଏଠି ପହଞ୍ଚି ଯାଇଛି । ନିଜେ କୁମାରୀ ମୋତେ ପରଷି ନ ଦେଲେ ମୁଁ ତୁମ ହାତରୁ ଖାଇବ ନାହିଁ ।

ଲୋକମାନେ ଯାଇ କାମସେଣା ଆଗରେ କହିଲେ । ମାତ୍ର କାମସେଣା ସେ କଥାକୁ ଖାତିର କଲନି । କହିଲା—ସେ ଖାଇଲେ ଖାଉ ନ ଖାଇଲେ ନାହିଁ । ମୁଁ ମୋଟେ ପରଷି ପାରିବନି ।

ଏତିକ ଶୁଣି ବାଳକ ସନ୍ତୋଷରେ ପଣ୍ଡାମାନଙ୍କ ରନ୍ଧା ଖାଇଲା । ହସ ଖେଳରେ ସେମାନଙ୍କୁ ପଚାରିଲା କୁମାରୀ କ'ଣ ଏହି ଖାଦ୍ୟ ଖାଆନ୍ତି ।

ପଣ୍ଡାମାନେ କହିଲେ ତାଙ୍କ ପାଇଁ ଅଲଗା ରନ୍ଧାହୁଏ । ଭଲ ଭଲ ମାଂସ ନ ହେଲେ ସେ କ'ଣ ଠାଆରେ ବସିବେ ?

ବାଳକ କହିଲା—ବୁଝିଲି ।

ପଣ୍ଡାମାନେ ପଚାରିଲେ—କ'ଣ ବୁଝିଲ ?

ବାଳକ କହୁଛନ୍ତି—ମାଉଁସ ଭୁଟିଲ । ଆଉ କ'ଣ ଭୁଟିଥାନ୍ତା ? ତୁମେ ତ ପଣ୍ଡା ହୁଣ୍ଡା; ଉଠାଅ ହଣ୍ଡା ମାନ ଗୁଣ୍ଡା । କୁମାରୀଙ୍କର ମାଉଁସ ମୁଣ୍ଡା, ଆମପାଇଁ ଖାଇ ଶୁଖିଲା କୁଣ୍ଡା । ଏମିତି ନାନାପ୍ରକାର ଅହଳ କଣ୍ଠ ବାଳକ ଗୁଲଗଲ୍ପ ।

ସରସିଜ କୁମାର ତାଠୁଁ ଯାହା ଭୁଟିଲା, ସେତିକରେ ତା ମନ ଅଣ୍ଡା ହୋଇଗଲା । ତେଣୁ ସେ ମନେ ମନେ ଠିକ୍ କରିନେଲା—ତାକୁ ବଡ଼ ହେବନ ହୋଲ ।

ରଜା ରାଣୀ ମାତିଲେ ମାତିଥାନ୍ତୁ । ବାଳକ କହୁଛନ୍ତି—ସବୁ ଲଣ୍ଡୁଭ, ସବୁ ଭଣ୍ଡୁର, ସବୁ ଭଣ୍ଡୁର ।

ସୁରସୁନ୍ଦରୀ । ଖାଲି ସୁରସୁନ୍ଦରୀ ନାଁ । ସୁରସୁନ୍ଦରୀ କଥା । ସାରା ରାଇଜଯାକ ଚହଳ ପଡ଼ିଛି, ସୁରସୁନ୍ଦରୀ ଦେଇ କଥା । ରାଜ୍ୟ ରାଜ୍ୟ ପ୍ରବଳ ହୁରି । ମଲାପିଲାଗୁଡ଼ାକ ଅସୁର ପେଟରୁ ଲେଉଟି ଆସିଛନ୍ତି ସୁରସୁନ୍ଦରୀ ଦୟାରୁ । ସେ ପୁଣି ସବୁ ପିଲାଙ୍କୁ ଖେଳିବା ପାଇଁ ଦେଇଛି ପାଞ୍ଚଟି ଲେଖାଏଁ ଅବ୍ୟସୁନ୍ଦର ମୁକ୍ତା । କିଏ ସେ—ସୁରସୁନ୍ଦରୀ ?

ଆଉ କାମସେଣା ଅସୁରୁଣୀ । ଯିଏ ପିଲାଗୁଡ଼ାଙ୍କୁ ନେଇ-ଥିଲା ବଳି ଦେବାକୁ । ଛି, ଛି, ତା ନାଁ ଧରିଲେ ଲୋକେ ନାକଟେକି ମାରି ଗୋଡ଼ାଉଛନ୍ତି ।

ସେଇଟା ପୁଣି କିଏ ?

ରାଜ୍ୟ ରାଜ୍ୟ ହୋଇଛି ଏହି ଚହଳ । ହଜାର ହଜାର ଛୁଟିଛନ୍ତି ପିଲାଙ୍କୁ ଦେଖିବାକୁ । ତାଙ୍କ ମୁହଁରୁ ଶୁଣିଛନ୍ତି, ସେହି ସୁରସୁନ୍ଦରୀ ପ୍ରଶଂସା ଓ କାମସେଣାର ନିନ୍ଦା ।

ରଜା ମନୋହରପ୍ରସାଦଦେବ ଏ ସବୁକଥା ଶୁଣି କାବା ହୋଇ ବସିଛନ୍ତି । ଅଲଛଳ ଦେଇଥିବା କୁମାରୀ କାମସେଣା ପ୍ରତି ତାଙ୍କର ସନ୍ଦେହ ଆସିଛି ।

କୁମାର ସରସିଜ—ପିଲାମାନଙ୍କ ମୁହଁରୁ ଯାଇ ସବୁକଥା ଶୁଣିଲା ପରେ ସୁରସୁନ୍ଦରୀ ଗୋଟିଏ କପର ଝିଅ, କେଉଁଠି ରହେ, କ'ଣ କରେ, ଏକଥା ଜାଣିବାପାଇଁ ବ୍ୟଗ୍ର ହୋଇ ପଡ଼ୁଛି । ତେଣୁ ବାପାଙ୍କଠାରୁ ଅନୁମତି ନେଇ ବାହାରି ପଡ଼ୁଛି ତା'ର ସନ୍ଧାନ ଆଶାରେ ।

କାମସେଣା ସୁରସୁନ୍ଦରୀର ପ୍ରଶଂସା ଶୁଣି ଶୁଣି ଜଳି ଯାଉଛି ଗଲାଣି । କାଳେ ନିଜ କଥାଟା ଲୋକଙ୍କ ପାଖରେ ଧରା ପଡ଼ିଯିବ ଏଥିପାଇଁ ମଧ୍ୟ ଭୟ । କ'ଣ କରିବ, କେମିତି ରାଜାପୁଅକୁ ନିଜ ଅକ୍ତିଆରରେ ପକାଇବ, ଏଥିପାଇଁ ସେ ଉପାୟ ପାଞ୍ଚୁଥାଏ ଖୁବ୍ ଶୀଘ୍ର ଶୀଘ୍ର । ସେତିକିବେଳେ ସରସିଜ କୁମାରଙ୍କ ଘୋଡ଼ାରେ ବସି ଛୁଟିଛି ।

କାମସେଣାର ଆଖି ଯାଇ ତା ଉପରେ ପଡ଼ିଲା । ଆଖି ଝଲସି ଗଲା ତା'ର ! ଯେପରି କାମଦେବ ଆସି ଏଠି ମୂର୍ତ୍ତିମାନ ହୋଇଛନ୍ତି, କାମସେଣାକୁ ସେହିପରି ଲାଗିଲା । ସରସିଜ କୁମାର ରୂପରୁ ଆଖି କାଢ଼ିନେବାକୁ ମୋଟେ ଆଖି ବଳୁନ ନାହିଁ । ସେ ଆଖି ଆଗରୁ ଲୁଚିବା ପର୍ଯ୍ୟନ୍ତ ଲୋଲୁପ ଦୃଷ୍ଟିରେ ଅନାଇଥାଏ । ଯେତେବେଳେ ପୂରାପୂରି ସେ ଲୁଚିଗଲା । ସେତିକିବେଳେ କାମସେଣା ହଠାତ୍ ବେହୋସ ହୋଇ ତଳେ ପଡ଼ିଗଲା ।

ସ୍ୱକର ଚାକରମାନେ ଦାନ୍ତ ଫିଟାଇ ମୁହଁରେ ପାଣିଦେଲେ । ବହୁ ସମୟ ପରେ ଯାଇ ତା'ର ଚେତାହେଲା । ହେଲେ ରାଜାପୁଅର ସୁନ୍ଦର ରୂପଟି ସାମନାରୁ ଲୁଚିଲା ନାହିଁ । ସେ ତଳକୁ ମୁହଁ ପୋତି ଖାଲି ଭାବିବାକୁ ଲାଗିଲା—ହାୟ ! କେଡ଼େ ସୁନ୍ଦର ନୁହେଁ ସେ ରାଜାପୁଅ ।

ପୁଣି ଥରେ ଥରେ ଭାବେ—ମୁଁ କ'ଣ ତାକୁ ପାଇବି ନାହିଁ ? ପୁଣି ମନକୁ ଦୃଢ଼କରି କହେ—ନିଶ୍ଚୟ ପାଇବି । ସୁରସୁନ୍ଦରୀର

ସବୁ ଯୋଗାଡ଼, ସବୁ ମନ୍ତ୍ରଯନ୍ତ୍ରକୁ ବିଫଳ କରି ସରସିଜକୁ ନିଶ୍ଚେ ମୋର କରିନେବି । କେହି ମୋ କାମରେ ବାଧାଦେଇ ପାରିବେ ନାହିଁ । ତାକୁ ମୁଁ ନିଶ୍ଚେ ପାଇବି···ନିଶ୍ଚେ ପାଇବି···ନିଶ୍ଚେ ପାଇବି । ଏହିକଥା ଭାବି ପାଗଳମାନଙ୍କ ପରି ଦଉଡ଼ିବାକୁ ଲାଗିଲା ।

ତା'ର ଏପରି ଘଟଣା ଦେଖି ସମସ୍ତେ ଆବାକାବା ହୋଇ ଅନାଇ ରହିଲେ । ସେହିଦିନଠାରୁ ଧର୍ମଶାଳା ଓ ଅନ୍ନଛତ୍ର ବନ୍ଦ ରହିଲା ।

ସରସିଜ କୁମାର ଘେ ଦ୍ୱାରେ ବସି ଝୁରୁଛି ଲକ୍ଷହୀନ ହୋଇ । ସୁରସୁନ୍ଦରୀ କଏ ଏବଂ କେଉଁଠି ରହେ, ତା'ର ସନ୍ଧାନ ନ ପାଇବା ପର୍ଯ୍ୟନ୍ତ ଜୀବନରେ ତା'ର ଶାନ୍ତି ନାହିଁ । ଏଣୁ ସେ ନିଜକୁ ଜପରି ନିଃସଙ୍ଗ ମନେ କରୁଥାଏ ।

କଥାରେ ଅଛି ଓ ଲୋକେ କହନ୍ତି—

ଭୁରେ କେଣିକି ଯାଉଛୁ ଚଢ଼େଇ
ମଡେ ଦଇବ ନେଉଛି କଡ଼େଇ ।

ଦଇବ ଯୁଆଡ଼େ ଯାହାକୁ ବାଟ କଢ଼ାଇ ନେବାର କଥା, ନେଉଛି । ସେଥିରେ ବାଧାଦେଇ କଏବା ଅଟକାଇ ରଖିବ ?

ଏତ ଗଲା ରଜାପୁଅ କଥା ତେଣେ କାମସେଣା ବି ବେଳକୁ ବେଳ ଅସ୍ତବ୍ୟସ୍ତ ହୋଇ ଦଉଡ଼ୁଛି । ସରସିଜ କୁମାର ପାଖରେ ପହଞ୍ଚିଲେ ରୂପଦାଟ ମେଲାଇ ତାକୁ ମୋହିତ କରିବେ । ତା ନ ହେଲେ ଯାଦୁହାସ ବଶକରି ନିଶ୍ଚେ ଆପଣାର କରିବ । ରମଣୀ ଜୀବନ ପାଇ ଏଭଳି ସୁ-ପୁରୁଷ ସଙ୍ଗେ ମିଳନ ନ ହେଲେ ଜୀବନର ସାର୍ଥକ ହେବ କପରି ? ଏହି ଧାରଣା ମନରେ ରଖି ଦଉଡ଼ୁଥାଏ ଅତି ପ୍ରବଳ ବେଗରେ ।

ଯାଦୁକୁହୁ ଆସି ବାଟରେ ଠିଆହେଲେ ।

କାମସେଣା ନମସ୍କାର୍ କଲା । କହିଲା ପ୍ରଭୁ ! ମୋ ଆଶା ସଫଳ ହେବ ନାହିଁ ?

ଯାଦୁବୃକ୍ଷ କହିଲେ—ଚେଷ୍ଟାକର । ମାତ୍ର ମୁଁ ଜାଣୁଛି କେବେ-ହେଲେ ରାଜପୁଅ ତୋ କଥାରେ ରାଜି ହେବନି । ତେଣୁ କୌଶଳରେ ଯାହା କରିବୁ କର । ଏତିକି କହି ସେ ଅନ୍ତର୍ଦ୍ଧାନ ହୋଇଗଲେ ।

କାମସେଣା ଟିକିଏ ଚାହିଁଲା । ତା'ପରେ ଦଉଡ଼ୁ ଦଉଡ଼ୁ ଦେଖିଲା, କିଛିଦୂର ଆଗରେ ରାଜପୁଅ ଥକ୍କାମାରି ହୋଇ ଗୋଟିଏ ଗଛମୂଳେ ବସିଛି । ପାଖରେ ବନ୍ଧା ହୋଇଛି ବଡ଼ କଳା ଘୋଡ଼ାଟାଏ । ଏଭଳି ସୁବର୍ଣ୍ଣ ସୁଯୋଗ ଛାଡ଼ିବାର ନୁହେଁ ଦେଖି, କାମସେଣା ତା'ର ପାଳଟ ସ୍ୱପ୍ନ କଥା ମନେ ପକାଇଲା ।

ଘୋଡ଼ାଟି ହେଲା କୁକୁର । ରାଜପୁଅ ହେଲା ଗୋଟିଏ ନେଉଳ । ଏଭଳି ଗୋଟିଏ ବିପୁଳ ବିଜୟ କରି କାମସେଣା ହସି ଉଠିଲା ଖୁବ୍ ଆନନ୍ଦରେ । ତା'ପରେ ଯାଇ ନେଉଳଟିକୁ ଧରି, କାନ୍ଧରେ ବସାଇ ଝୁଲଣ ଗୀତ ବୋଲି ବୋଲିକା ।

କୁକୁର ପଛରେ ଗୋଡ଼ାଇଥାଏ । ମନ ଭିତରେ ଉଠୁଛି ପ୍ରେମର ଅପୂର୍ବ ଝରଣା କାମସେଣାର । ଝୁଲଣବେଳେ ପାଦ ତା'ର ସ୍ୱର୍ଗରେ ଛୁଉଁଛି, ସେକଥା ତାକୁ ମୋଟେ ଜଣାଯାଉ ନଥାଏ । ଯାଇ ଯାଇ ନଳ ଦୁର୍ଗରେ ପହଞ୍ଚିଲା ।

ଅସୁରମାନେ ଆସି ଦେଖାକଲେ । ନେଉଳପାଇଁ ସିନା ପିଞ୍ଜରା ତିଆରି ହେଲା, କୁକୁର ରହିଲା ସେହି ପିଞ୍ଜରା ପାଖେ ପାଖେ । ଆଉ ଭୟ କ'ଣ ? ରନ୍ଧାବଢ଼ା, ଖିଆପିଆ ସରିଲା ପରେ ଅସୁରମାନଙ୍କୁ ଡକାଇ କହିଲା—ଦେଖ ଭାଇମାନେ ! ମୁଁ ବର୍ତ୍ତମାନ ଘୋର ବିପଦରେ ପଡ଼ିଛି ? ଏ ଦେଶରେ ସୁରସୁନ୍ଦରୀ ବୋଲି ଗୋଟିଏ ଯୁବତୀ କେଉଁଠି ଅଛି ? ସେଇ ହେଉଛି ମୋର ଶତ୍ରୁ ।

ତାର କଥା ଭାବି ଭାବି ମୁଁ ବୋଧହୁଏ ପାଗଳାମି ହୋଇଯିବି । ତେଣୁ ତୁମ୍ଭମାନଙ୍କୁ କହୁଛି—ଯଦି ମୋ ଠାରେ ସମସ୍ତଙ୍କର ଶ୍ରଦ୍ଧା ଅଛି ତେବେ ଖୋଜ ନେଉ ସେ ଯୁବକଟାକୁ ଧରିଆଣ । ତାକୁ ନିଆଁରେ ପୋଡ଼ି ତୁମ୍ଭମାନଙ୍କୁ ଖୋଇ ସାରିଲି ପରେ ଯାଇ ମନରେ ଶାନ୍ତି ଆସିବ ।

ବାଘା ଅସୁର ପଚାରିଲା—ଦେଈ ! ତୁ କ'ଣ ସେ ମାଈଁସରୁ ଜମା ଖଣ୍ଡେହେଲେ ଖାଇବୁନି ?

କାମସେଣା କହିଲା—ଜନ୍ମହେଲାଦିନଠାରୁ ମଣିଷ ମାଈଁସ ଖାଇବା କେବେ ଦେଖିଛ ?

ଏତିକିରେ ସମସ୍ତେ ଚୁପ୍ ରହିଲେ । ରଜାପୁଅ ରହିଲା ଅଜ୍ଞାନ ଅବସ୍ଥାରେ ସାମାନ୍ୟ ନେଉଳଟିଏ ହୋଇ । ବାହ୍ୟଜ୍ଞାନ ତାର ମୋଟେ ନ ଥିଲା । କୁକୁରଟି କେତେବେଳେ ହେଲେ ତା ପାଖ ଛାଡ଼ି କୁଆଡ଼େ ଯାଏନି ।

ଅସୁରମାନେ ଗଲେ ସୁରସୁନ୍ଦରୀକୁ ସନ୍ଧାନ କରିବାପାଇଁ । ଦୁର୍ଗ ପୁରାପୁରି ନିରୋଳା ପଡ଼ିଲା । କାମସେଣା ଭାବିଲା—ଏଥର ନେଉଳକୁ ମଣିଷ କରି ବାହା ହେବାପାଇଁ ଯୋଗାଡ଼ କରିବ । ତେଣୁ ସେ ତା ନିଜ ଚଳିବା ଘରଖଣ୍ଡିକ ବଢ଼ିଆମତେ ପରିଷ୍କାର କରି ସଜାସଜି କରିଦେଲା । କୁକୁରକୁ ଲୁହା ଶିକୁଳିରେ ଆଉ ଗୋଟିଏ ଘରେ ବାନ୍ଧି ପକାଇ ସନ୍ଧ୍ୟାବେଳେ ନେଉଳକୁ ମଣିଷ କଲା ।

ଏଣେ ନେଉଳ ମଣିଷ ହେଲାମାତ୍ରେ ତେଣେ କୁକୁରଟା ଘୋଡ଼ା ହୋଇ ହିଁ ହିଁ ହସିଉଠିଲା । ବନ୍ଧା ହୋଇଥିବା ଲୁହା ଶିକୁଳିକୁ ଏକା ଝିଙ୍କାକେ ଛିଣ୍ଡାଇଦେଇ ଧାଇଁ ଆସିଲା ରାଜପୁଅ ଓ କାମସେଣା ଥିବା ଘରକୁ । ଏକଥା ଦେଖି କାମସେଣା ପ୍ରମାଦ ଗଣିଲା । ମନ୍ତ୍ରବଳରେ ଘୋଡ଼ାଟାକୁ ପୁଣି ବଦଳାଇ କରି ଦେବାରୁ

ରଜାପୁଅ ହୋଇଗଲେ ଗୋଟିଏ ଶୁଆ । ଏମିତି ଅନେକଥର ଯାଦୁ କରି ଉର୍ବଶୀ ବଡ଼ ହତାଶ ହୋଇ ପଡ଼ିଲେ । କଣ କରିବ କିଛି ଠିକ୍ କରି ପାରୁନାହାନ୍ତି । ଘୋଡ଼ାକୁ ମାରିଦେବାପାଇଁ ଖଣ୍ଡା ଉଞ୍ଚାଇଲେ ମାତ୍ରେ ଜଣେ ଅଲେଖ ବାବା ଆସି କହିଲେ—ଘୋଡ଼ାକୁ ମାରିଦେଲେ ରାଜାପୁଅକୁ ଆଉ ପାଇବୁନି ! ସେ ଗୋଟିଏ ଫୁଲ ହୋଇ ମଉଳି ପଡ଼ିବ ।

ପଚାରିଲେ—କାହିଁକି ?

କହିଲେ—ସେ ଜନ୍ମ ରହସ୍ୟ ଠିକ୍ ସେଇଆ । ଏ ଘୋଡ଼ା ତାକୁ ବନଦୁର୍ଗା ଦେଇଛନ୍ତି । ଘୋଡ଼ାର ଓ ତା'ର ଏକଆତ୍ମା, ଏକ କଥା । ତେଣୁ ତୁ ଯେବେ ରଜାପୁଅକୁ ପାଇବାକୁ ଇଚ୍ଛା କରୁଛୁ, ତେବେ ସେ ଘୋଡ଼ାଟାକୁ ମଣିଷ କରିବାକୁ ହେବ ।

ପଚାରିଲି—କିପରି ?

କହିଲେ—ସେ କଥା ବନଦୁର୍ଗା ଜାଣନ୍ତି । ତାଙ୍କ ପାଖେ ତପସ୍ୟା କରି ତାଙ୍କୁ ସନ୍ତୋଷ କଲେ ସବୁକଥା ଜଣାଇଦେବେ ସେ । ଏକଥା ଶୁଣି କାମସେଣା ବାହାରିଲି ବନଦୁର୍ଗାଙ୍କ ପାଖକୁ । ରଜାପୁଅକୁ ନେଇଲି ଓ ଘୋଡ଼ାକୁ କୁକୁର କରି ଗୋଟିଏ ଘରେ ବାନ୍ଧି ପକାଇଲି । କବାଟକଣ୍ଠା ଦେଇ ଅନୁଚରମାନଙ୍କୁ ଖୁବ୍ ସତର୍କ ରହି ଜଗିବାକୁ କହିଗଲି ।

ସୁରସୁନ୍ଦରୀର ଗୋଟିଏ କଥାକୁହା କୁଣ୍ଢେଇ ଥାଏ । ଯେତେବେଳେ ତା'ର ବୁଦ୍ଧି ନିଅଣ୍ଟ ପଡ଼େ କି କୌଣସି କଥା ଜାଣିବାକୁ ଇଚ୍ଛାହୁଏ, ସେତେବେଳେ ତାକୁ ନେଇ ଗୋଟିଏ ନିଭୃତ ଘରେ ବସି ପଚରାପଚରି କରେ । ବନଦେବୀ ତା'ର ଏକମାତ୍ର ଆରାଧ୍ୟ ଠାକୁରାଣୀ । ତେଣୁ ସେ ନିତି ସନ୍ଧ୍ୟାବେଳେ ତାଙ୍କ ଉଦ୍ଦେଶ୍ୟରେ ଗୋଟିଏ ଘିଅଦୀପ ଜଳାଏ ସାହାଡ଼ା ଗଛମୂଳେ ।

ସେଦିନ ସଞ୍ଜଟି ଦେଇ ଫେରି ଆସିବା ବେଳକୁ ଦେବୀ ଦର୍ଶନ ଦେଇ ତାଙ୍କୁ କହିଲେ—ଆମ୍ଭେ ଝିଅ ! କାଲିଠୁ ତୋ ଉପରକୁ ବିପଦ ଘନେଇ ଆସୁଛି । ତୁ ଆଉ ହେଳା ନ କରି ଯାଇ କୁଣ୍ଡେଇକ ପଚାରି ଶୀଘ୍ର ତୋ ବାଟରେ ଆଗେଇ ଗୁଳ । ତା ନହେଲେ ଶେଷରେ ମୋତେ ଦୋଷ ଦେବୁନି କି ମୁଁ ତୋପାଇଁ କିଛି କରି ପାରିବିନି ।

ଦେବୀ ଅନ୍ତର୍ଦ୍ଧାନ ହୋଇଗଲେ । ସୁରସୁନ୍ଦରୀ ମୁଣ୍ଡରେ ମଧ୍ୟ ସଇତାନ ପଶିଲା । ମୁହୂର୍ତ୍ତଟାଏ ମାତ୍ର ବିଳମ୍ବ ନକରି ସେ ଯାଇ ପହଞ୍ଚିଲା ଘରେ । ଯୋଉ ନିୟମରେ କୁଣ୍ଡେଇକ ପଚାରିବାର କଥା ଠିକ୍ ସେହି ନିୟମରେ କୁଣ୍ଡେଇକ ପଚାରିଲା ।

କୁଣ୍ଡେଇ କହିଲା—କାମସେଣା ତୋତେ ବନ୍ଦିକରିବାକୁ ବସିଛି ।

ପଚାରିଲା—କି ଉପାୟରେ ?

କହିଲା—ଦେଖ, ରଜାପୁଅ ବର୍ତ୍ତମାନ ପୂରାପୂରି ତା ଇକ୍ତିଆର ଭିତରେ, କାମସେଣାର ଇଚ୍ଛା—ତାକୁ ବିଭା ହେବାପାଇଁ । ତେଣୁ ଅନେକ ପ୍ରକାର ଚେଷ୍ଟା କରି ହାତମୁଠାରେ ପାଇଛି ।

ପଚାରିଲା— କିପରି ପାଇଲା ?

କହିଲେ—ଯାଦୁବଳରେ ରଜାପୁଅକୁ ନେଇକି ଓ ତା ଘୋଡ଼ାଟାକୁ କୁକୁର କରି ଆଣି ପାଖରେ ରଖିଛି । କାଲି ବନ-ଦୁର୍ଗାଙ୍କୁ ପୂଜାକରି ସନ୍ତୋଷ କରି ନେଲା ପରେ ତୁ ଆଉ ତାକୁ ବଞ୍ଚାଇପାରିବୁନି ଯେ ।

ପଚାରିଲା—ରଜାପୁଅ ତା'ର ହେବେ ତ ?

କହିଲା—ଏଥିରେ ଆଉ ସନ୍ଦେହ କ'ଣ ଅଛି ! ମୁଁ ତ ବହୁ ପୂର୍ବର କଥା ଜାଣେ । ରଜାପୁଅ ଓ ଯକ୍ଷ ପୁଅଙ୍କର ଅଘୋର ପ୍ରୀତି । ସେ ବହେଁ ଅଘୋରନାଗପୁଣଙ୍କୁ ପୂଜା କରି ବର ପାଇଛନ୍ତି ।

ଘଟିହିଁ ଏକ ବେଳେ ଘଟିହେବେ । ଏକାଥରକେ ଯୋଡ଼ାଏ ଅଦ୍‌ଭୁତ ଜନ୍ମ ତାଙ୍କପାଇଁ ବଡ଼ ଚିନ୍ତା । ଏଇଥିପାଇଁ ସେ ଛଦ୍ମବେଶୀ ଲୋକ ଚକ୍ଷୁକୁ ଫାଙ୍କି ଅନେକ ଦାନବସେନା ଏକାଠି ଅଛନ୍ତି । ଯକ୍ଷ ପୁଅ ଅଛି ଘୋଡ଼ା ରୂପ ଧରି ।

ପଚାରିଲା—କୋଉଠି ?

କହିଲା, ସରସିଜ କୁମାର ପାଖେ ପାଖେ । ସବୁବେଳେ ସେ ତା' ଉପରେ ସବାର ହେଉଛି ।

ପଚାରିଲା—ଯକ୍ଷ ପୁଅ ନାଁ ?

କହିଲା—ଅଳକକୁମାର ।

ପଚାରିଲା—କାମସେଣା ଅଛି କେଉଁଠି ?

କହିଲା—ସେ ଗଲାଣି ବନଦେବୀଙ୍କ ପାଖରେ ତପସ୍ୟା ଓ ପୂଜାଉଜା କରିବାକୁ ।

ଏ କଥା ଶୁଣି ସୁରସୁନ୍ଦରୀ ଚମକି ପଡ଼ିଲା । ଆଉ କ୍ଷଣେମାତ୍ର ବିଳମ୍ବ ନକରି ଦଉଡ଼ିଲା କାମସେଣା ଦୁର୍ଗକୁ । ଦେଖୁ ଦେଖୁ ପୂର୍ବ ଭଳି ତା ମୁଣ୍ଡ ଉପରେ ଫୁଟି ଉଠିଲା ସୁନାପଦ୍ମ । ହସିଦେଲେ ଠୋକୋଉକ ଠୋକେଇ ମୁକ୍ତା ଝଡ଼ିବ । କିପରି ଶୀଘ୍ର ସେ ସରସିଜ କୁମାରକୁ କାମସେଣା କବଳରୁ ଉଦ୍ଧାର କରିବ, ଏଥିପାଇଁ ମନ ବ୍ୟାକୁଳ ହୋଇ ଉଠୁଥାଏ । ଧଇଁସଇଁ ହୋଇ ଦଉଡ଼ି ଦଉଡ଼ି ପହଞ୍ଚିଲା ସେହି ଦୁର୍ଗ ଆଗରେ ।

କାମସେଣା ଯାଇ ତପସ୍ୟା କରୁଛି । ଜଗୁଆଳ ଅସୁରମାନେ ସୁରସୁନ୍ଦରୀଙ୍କ ଦେଖି ଭୟରେ ଥରିବାକୁ ଲାଗିଲେ । ପୂର୍ବଥର ସାପ କ ମୁଣ୍ଡା କଥା ମନେ ପକାଇ କହିଲେ—ମା, ଆମେ କୌଣସିପ୍ରକାର ଅପରାଧୀ ହୋଇନାହୁଁ । ତୁମେ ଆଜି ଆମ ଉପରେ ରାଗ କରନା । ଯଦି କିଛି ସେବାରେ ଲାଗି ପାରିବୁ, ତେବେ ଆଜ୍ଞା ଦିଅ ।

ସୁରସୁନ୍ଦରୀ କହିଲା—ମୁଁ ତୁମର କିଛୁ ଅନିଷ୍ଟ କରିବିନି । ମୋତେ ଖାଲି ଦେଖାଇ ଦିଅ କାମସେଣା କେଉଁଘରେ ନେଉଳ ଓ କୁକୁର ରଖିଛୁ ।

ଅସୁରମାନେ ନେଇ ସେ ଘର ଦେଖାଇ ଦେଲେ ।

ଖୁବ୍ କଠିନ ତାଲା ପଡ଼ିଛି । ହେଲେ ସୁରସୁନ୍ଦରୀ ପକ୍ଷେ ଅସାଧ୍ୟ ନ ଥିଲା । ମନ୍ତ୍ର ବଳରେ ଟିକିଏ ହାତ ହଲାଇଦେବାମାତ୍ରେ ସେ ତାଲାଟି ଠକ୍‌କିନା ଖୋଲିଗଲା । ସେତେବେଳକୁ ନେଉଳ ଓ କୁକୁର ନିଜ ନିଜ ଆଡ଼କୁ ଅନାଅନି ହୋଇ ଲଗିଥାନ୍ତି କାନ୍ଦିବାରେ ।

ତାଙ୍କୁ ଅନେଇଦେଇ ସୁରସୁନ୍ଦରୀ ମଧ୍ୟ କାନ୍ଦ ପକାଇଲା । ପୁଣି ବାଁ ହାତଟା ଉପରକୁ ଉଠାଇ ଦେବାରୁ ସେ ଦୁହିଁଙ୍କ ବନ୍ଧନ ଖୋଲିଗଲା । ହେଲେ ସେମାନେ ପଳାଇ ଗଲେନି । ଅଧିକନ୍ତୁ ନେଉଳଟା ଆସି ସୁରସୁନ୍ଦରୀ କାନ୍ଧରେ ଚଢ଼ିଲା ।

କୁକୁରଟି ଠିଆହୋଇ ସବୁ ଦେଖୁଥାଏ ।

ସୁରସୁନ୍ଦରୀ ନେଉଳଟିକି କାନ୍ଧରେ ବସାଇ ହସି ହସି କହିଲା—ତୁମେ ନା ରଜାପୁଅ ସରସିଜ କୁମାର ?

କୁକୁରଟି ତା ମୁହଁକୁ ଅନାଇ କଲା ଗୋଟାଏ ଆନନ୍ଦ ଚିତ୍କାର । ସେ ଚିତ୍କାର ବାଜିଲା ଯାଇ କାମସେଣା କାନରେ । ମନଟା ଛନ୍ଦି ଛନ୍ନ ହୋଇଉଠିଲା । ମାତ୍ର କରେ କ'ଣ ? ତପସ୍ୟାରେ ତ ବସିଛି, ବର ନ ପାଇ ଯିବ କିପରି ? ଏଣୁ 'ଘୋଡ଼େ କମ୍ବଳ ପଡ଼େ-ରହୁ' ନ୍ୟାୟରେ ବସି ରହି ଖୁବ୍‌ଯୋରରେ ଡାକ ପକାଇଲା ବନଦୁର୍ଗାଙ୍କୁ ।

ବନଦୁର୍ଗା ଶୂନ୍ୟରେ ଥାଇ କହିଲେ—ଆଲୋ କାମସେଣା ସବୁକାମ ଶେଷ ହୋଇଗଲାଣି । ଆଉ ବୃଥା ଗୁଡ଼ାଏ ପରିଶ୍ରମ ନ କରି ସୁରସୁନ୍ଦରୀକୁ ନଜର ଭଉଣୀ କହନେ ।

କାମଧେଣା ଘରରେ କାନ୍ଦ ଉଠି କହିଲା—ନାହିଁ ଦେଖ ! ମୁଁ ରଜାପୁଅକୁ ନ ପାଇଲେ ଏ ପ୍ରାଣ ଦଉଡ଼ ଦେବି ତୁମର ପାଦରେ । ଲୋକେ ଜାଣନ୍ତୁ ତୁମ ଯୋଗେ ଗୋଟିଏ ଅନାଥା ବାଳିକା ଆତ୍ମ-ହତ୍ୟା କଲା ବୋଲି ।

ଦେବୀ କହିଲେ—ବୁଝିଲୁ କାମଧେଣା ! କଥାରେ ଅଛି—

ନ ବିଦ୍ୟାଂ ନଚ ପୌରୁଷଂ, ଭାଗ୍ୟଂ ଫଳନ୍ତି ସର୍ବଦା ।

ଭାଗ୍ୟଛଡ଼ା ପଥ ନାହିଁ । ତୋ ଭାଗ୍ୟ ମୁଁ ଭୋଗିବି ନା ମୋ ଭାଗ୍ୟ ତୁ ଭୋଗିବୁ ? ଯହିଁ ଲଢ଼େଇ କରୁଥିଲୁ । କାହାର ଜୟ ହୋଇନାହିଁ କି କାହାର ପରାଜୟ ହୋଇନାହିଁ । ବାଣ୍ଟିକୁଣ୍ଟି ସମାନ ଫଳ ପାଇଛ । ଏଥର ଖୁସି ମନରେ ଫେରିଯା, ତୋ ଘରେ ଦେଖିବୁ ଯାହା ମୁଣ୍ଡରେ ସୁନାର ଚୂଡ଼ ସେହି ତୋର ସ୍ୱାମୀ । ତାର ଗଳାରେ ଲମ୍ବାଇ ଦେବୁ ଚମ୍ପାର ମାଳ ।

କାମଧେଣା ଫେରିଗଲା । ବାଟେ ବାଟେ ସୁନା ଚମ୍ପାର ମାଳ ବି ଗୁନ୍ଥୁଥାଏ । ଭାବୁଥାଏ, ରଜାପୁଅ ଛଡ଼ା ସୁନାଚୂଡ଼ ଆଉ କାହା ମୁଣ୍ଡରେ ଥିବ ?

ତେଣେ ସୁରସୁନ୍ଦରୀ ନେଉଳକୁ ନିଜ କାନ୍ଧରେ ବସାଇ ମନ୍ତ୍ର ବଳରେ ମଣିଷ କରିଦେବା ମାତ୍ରେ କୁକୁରଟି ମଧ୍ୟ ମଣିଷ ହୋଇ ଗଲା । ଯହିଁଯାକ ରୂପରେ କେହି କାହାକୁ କମ୍ ନୁହନ୍ତି । ସୁର-ସୁନ୍ଦରୀ ଟିକିଏ ଗୁମ୍ ଖାଇଗଲା ।

ରଜାପୁଅ ତା ଓଠଟିକୁ ଚିପି ଦେଇ କହିଲା, ତୁମେ କିଏ ସୁରସୁନ୍ଦରୀ ?

ସୁରସୁନ୍ଦରୀ ଅଭିମାନ କରି କହିଲା—ମଲା, ତା'ଠି ତୁମର ଦରକାର କ'ଣ ମ ?

ରଜାପୁଅ କହିଲେ—ତା'ର ଯୋଡ଼େଇ ମୁଁ ପିନ୍ଧା ଥିବ ଘରେ ଲୁହା ଶିକୁଳୀରେ ବନ୍ଦୀ ।

ସମସ୍ତେ ହୋ ହୋ ହସି ଉଠିଲେ ।

ତେଣୁ କାମସେଣା ଝିଅଁସଇଁ ହୋଇ ଧଇଁଛନ୍ତି । ଲକ୍ଷ୍ୟ ତା'ର ସୁନାଗୁନ୍ଦ ଉପରେ । ଯେତେବେଳେ ସେ ଆସି ଦୁର୍ଗ ଦୁଆର ମୁହଁରେ ପହଞ୍ଚିଲେ, ଆଖିରେ ହଠାତ୍ ଝଲସି ଉଠିଲା ସୁନାଗୁନ୍ଦ ଦେଖି । ସେତେବେଳକୁ ତା'ର ଆଉ ବାହ୍ୟଜ୍ଞାନ ନ ଥାଏ । ବନଦେବୀଙ୍କ କଥା ଅନୁସାରେ କେବଳ ତାକୁ ଦେଖା ଯାଉଥାଏ ସୁନାଗୁନ୍ଦ । ତା'ଛଡ଼ା ଘର କି ମଣିଷ କମ୍ବା ଗଛଲତା କିଛି ଦେଖାଯାଉ ନଥାଏ । ତେଣୁ ସେ ହଠାତ୍ ଆସି ଅଲେଖକୁମାର ଗଳାରେ ସୁବର୍ଣ୍ଣ ଚମ୍ପା-ମାଳଟି ଲମ୍ବାଇ ଦେଇ କହିଲା—ତୁମେ ମୋର ସ୍ୱାମୀ । ତା'ପରେ ପାଦଧରି ପ୍ରଣାମ କଲା ।

ଅଲେଖ କୁମାର ତାକୁ ତଳୁ ଉଠାଇ ନିଜ ଛାତିରେ ଜଡ଼ାଇ ଧରିଛନ୍ତି । ଏତିକିବେଳେ ହସି ହସି ଦେଖାଦେଲେ ସେଇ ଅଲେଖ-ବାବା ଓରଫ ଧର୍ମ ନିରଞ୍ଜନ । ତାଙ୍କ ମୁଖରୁ ଶୁଣା ଯାଉଥିଲା ଗୋଟିଏ ନୀତିକଥା—

ଧର୍ମ୍ମ ଏବଂ ବଣିଗଭଦ୍ରା ପାପପୂଣ୍ୟ ବିଶ୍ବରକଃ<br>
ବିଧାତ୍ୟ ତୁଳନାଯୁଂ ଲୁ ଧାସ୍ଯତେ ଦଣ୍ଡମଣ୍ଡକଂ<br>
ଅଦୃଷ୍ଟ ମୂଳଂ ସର୍ବଂଲୁ ଜ୍ଞାସ୍ଯତେ କର୍ମକରଣାଂ<br>
ଧର୍ମ୍ମତତ୍ତ୍ବଂ ନ ଜାନାନ୍ତି ସ୍ୱାହଂକାର ବଶେ ଜନଃ ।

ଅର୍ଥ—ପାପ ଓ ପୁଣ୍ୟ ବିଚାର କରି ଧର୍ମ୍ମ ପୁରୁଷ ପ୍ରାଣୀକୁ ଦଣ୍ଡମଣ୍ଡ ଦିଏ । ଦୁଷ୍ଟେ ତାହା ମାନନ୍ତି ନାହିଁ । ଅଦୃଷ୍ଟ ଉପରେ ନିର୍ଭର କରନ୍ତି । ମାତ୍ର ସେ କଥା ଠିକ୍ ନୁହେଁ । ଏଣୁ ଧର୍ମ୍ମ ଉପରେ ନିର୍ଭର କରି ଚଳିବା ଉଚିତ ।

କାମସେଣା ଚମକପଡ଼ି ଅନାଇଦେଲେ । ସୁରସୁନ୍ଦରୀ ତାଙ୍କୁ ଅନାଇ ମୁରୁକି ମୁରୁକି ହସୁଛି । ରଜାପୁଅ ତା ପାଖରେ ହାତ ଯୋଡ଼ାଇ ଠିଆ ହୋଇଛନ୍ତି ।

କାମସେଣା ପଚାରିଲା—ତୁମ୍ଭେ ନା ସୁରସୁନ୍ଦରୀ ?

କହିଲା—ହଁ ଭଉଣୀ କାମସେଣା ! ଆଉ ମୋଠାରେ ଦୁଃଖ କରନା । ମୁଁ ମୋ କାମ ହାସଲ କଲି ଓ ତୋତେ ତୋ କାମ ହାସଲ କରାଇ ଦେଇଛି ।

କାମସେଣା କହିଲା—ତୋ ପ୍ରତି ମୋର ଆଉ ରାଗ ନାହିଁ । ସୁରସୁନ୍ଦରୀ ! ଆଜିଠୁଁ ତୁ ମୋର ସାନଭଉଣୀ ।

ଅଲେଖ ନିରଞ୍ଜନ ସାଧୁ କହିଲେ—ହଁ ଝିଅ, ଗଲା କଥା ଯାଇଛି । ତାକୁ ସବୁ ମନରୁ ପାସୋରି ଦେଇ ଏଣିକି ଭଉଣୀ ଭଉଣୀ ହୋଇ ଚଳ । ମୁଁ ତୁମ୍ଭମାନଙ୍କୁ ନିକାଳ ସନ୍ଧ୍ୟାରେ ଆଶୀର୍ବାଦ କରୁଛି । ସମସ୍ତେ ପ୍ରଣାମ କଲେ ।

ପ୍ରଭୁ ଅଲେଖ ନିରଞ୍ଜନ ସମସ୍ତଙ୍କୁ ଆଶୀର୍ବାଦ ଦେଇ କହିଲେ

**ବିଶ୍ୱ ଜଗତର ମଙ୍ଗଳ ହେଉ ।**

ତା'ପରେ ସମସ୍ତେ ଫେରିଲେ ମହାନଦୀ ନଗରକୁ । ଅସୁରମାନେ ପରିବାରସହ ଧନଦୌଲତ ବୋହି କରି ପହଞ୍ଚାଇ ଦେଲେ । ସୁର ସୁନ୍ଦରୀ-ବାପ ଖବର ପାଇ ପହଞ୍ଚିଲା । ରଜା ଓ ରାଣୀ ଝିଅଂ ସୁନ୍ଦର ଦୁଅଜ୍ୱାଇଁ ପାଇ ଆନନ୍ଦ ହୋଇଗଲେ । ଯକ୍ଷପୁତ୍ର କଥା, କାମସେଣା କଥା ଓ ସୁରସୁନ୍ଦରୀ କଥା ଘରିଆଡ଼େ ଚହଳ ପଡ଼ିଗଲା ।

କେତେଦିନର ଗୁପ୍ତକଥା ସବୁ ଏତେଦିନ ପରେ ଲୋକମାନେ ଜାଣିବାକୁ ପାଇ ଖୁବ୍ ଖୁସିହେଲେ । ଦିନ, ବାର, ନକ୍ଷତ୍ର ଦେଖାଯାଇ ହିନ୍ଦୁ ବିଧାନରେ ବାହାଘର ହେଲା । ମହୋତ୍ସବ, ଧନ ମହୋତ୍ସବ, ଦେବ ମହୋତ୍ସବ, କର୍ମଭୂମି ମହୋତ୍ସବ, ପ୍ରଜା

ଘଂଟେକ ମହୋତ୍ସବ, ହରିଜନ ସଙ୍ଗ ଓ ମହୋତ୍ସବ, ସାଧୁ ସନ୍ନ୍ୟାସୀ ମହୋତ୍ସବ । ଖାଲି ମହୋତ୍ସବ ଉପରେ ମହୋତ୍ସବ । ଧର୍ମସଭା, ଯଜ୍ଞ, ବ୍ରାହ୍ମଣ ବରଣ, ଦେବଉତ୍ସବମାନେ ଅଜସ୍ର ଧନ ଖର୍ଚ୍ଚ ହେଲା ।

ହଜାର ହଜାର ଲୋକ ଖାଇଲେ, ନେଲେ ପାରି ଶୋଇଲେ । କାହାର କାହାର ବଦହଜମ ହେଲା । ନାନା କଥା । ଲୋକ ସରସର ହୋଇ ଏ ହଳଖାଇ ବଟସ୍ଥ ଯାଇ ନବାଗରେ ଫେରି ଆସିଲା ।
ମୋ ଭାଇ ଭଉଣୀମାନେ !

ଏ କଥାଟିକ ସତଗଳ୍ପ
କାମଧେଣା ନାସ୍ତି ତରିଗଳ୍ପ ।

ମଣିଷର ପାଞ୍ଚ ଜନ୍ମବନ୍ଧୁ
ବାଧ୍ୟପାଞ୍ଚ ପିନା ମହାସିନ୍ଧୁ ।

ବିଧାତା ପାଞ୍ଚିଲେ ଲୁହା ହୁଏ ସୁନା
ପଥର ଫାଟିଲେ ଜଳ
ଭାଗ୍ୟ ଘୋଟକକୁ ବନ୍ଧ ରଖିବାକୁ
ମଣିଷର କାହିଁ ବଳ ।

ବଡ ବଡଲୋକଙ୍କ ପଣ୍ଡିତ ଗତିର
କଥା ଏଣ୍ଠାରେ ଥାଉ
ପାଠକ ପାଠିକା ଶ୍ରଦ୍ଧା ଦେଖାଗଲେ
କହିବେ ସେ ପୁଣି ଆଉ ।

କାଳ ବହୁରୂପୀ ଉଭ ଛଳେ ବସି
ନୂଆ କି ପୁରୁଣା ଛବି
ଦଣ୍ଡ ପାନେ ଦ୍ରଷ୍ଟା ଯାଏ କି ଅଜନା ?
ଦୁଃଖେ ଛାଡ଼ନ୍ତି କି ପଶା ।

ସୁନା ଜ ଯୁଡ଼ିଲ      ଜଗର ମହକ
ଚଢ଼ିଲେ ଖଡ ଗଦାରେ
ପିଚକ ଜ କେବେ      ବୋଲିଇବ ସୁନା
ପଡ଼ି ଗୋଲକ ଧନ୍ଦାରେ ।

ପାଠକେ ବୁଝିବେ      କାହାଣୀର ମର୍ମ
ବଦାପୁ ନେଉଛୁ ମୁକ୍ତି
ପରମେଶ୍ୱରଙ୍କୁ      କରିବେ ପ୍ରାର୍ଥନା
ପୃଥିବୀ କଲ୍ୟାଣ ଲାଗି ।

ଦେଶର ଦଶର      ମଙ୍ଗଳ ମନାସେ
ଜନକୁ ମୁଦୃର୍ତ୍ତି ମାସ
ପ୍ରଭୁଙ୍କୁ ପ୍ରାର୍ଥନା      କର ନର-ନାରୀ
ବୃଦ୍ଧ, ବୃଦ୍ଧା, ଯୁବୀ-ଯୁବ ।



ମୁଦ୍ରାକର—ଶ୍ରୀ ବଦ୍ୟାଧର ସାହୁ, ବଣ୍ଣବଦ୍ୟା ପ୍ରେସ, କଟକ-୨

